ସପ୍ତମ ବର୍ଷ, ଦ୍ୱିତୀୟ ସଂଖ୍ୟା

ମାର୍ଚ୍ଚ, ୨୦୧୨

ଓଡ଼ିଶାର ପ୍ରଥମ ସଂପୂର୍ଣ୍ଣ ଓଡ଼ିଆ ଇ-ପତ୍ରିକା

# ଆହ୍ୱାନ

## ଆସ ଓଡ଼ିଆରେ ଲେଖିବା, ପଢ଼ିବା, ପଢ଼ାଇବା



ପ୍ରତିଷ୍ଠାତା ଓ ସଂପାଦକ

## ଡ଼ା ଜ୍ୟୋତି ପ୍ରସାଦ ପଟ୍ଟନାୟକ

ଏମ୍.ବି.ବି.ଏସ୍, ପି.ଜି.ଡ଼ି.ଏମ୍.ସି.ଏଚ୍, ପି.ଜି.ଡ଼ି.ଏଚ୍.ଏମ୍

ଯୋଗାଯୋଗ : ବୀମା ନଗର, ଆମ୍ବପୁଆ ମୁଖ୍ୟ ରାସ୍ତା, ବ୍ରହ୍ମପୁର, ପିନ୍: ୭୬୦୦୧୦, ଓଡ଼ିଶା, ଫୋନ୍: ୯୮୭୧୯୭୨୧୭୦

ଆଜି ବିଶ୍ୱ ମହିଳା ଦିବସ, ଏହି ଅବସରରେ
ବିଶ୍ୱବନ୍ଦନୀୟା ମାତୃଶକ୍ତିକୁ ପ୍ରଣାମ କରୁଛି ଏବଂ
ଆଶା କରୁଛି ମା'ଙ୍କ ସ୍ନେହ, ମମତା ଓ ଶ୍ରଦ୍ଧା
ଯେପରି ଆମ ପ୍ରତି କମ ହୁଏନି ସେହିପରି
ଆମେ ବିଶ୍ୱ ମହିଳା ସମାଜକୁ ସ୍ନେହ, ଶ୍ରଦ୍ଧା ଓ
ସମ୍ମାନ ଦେଉଥିବା । ବନ୍ଦେ ମାତରଂ...




## ପ୍ରଚ୍ଛଦ

ବିଶ୍ୱ ମହିଳା ଦିବସ, ଦୋଳ ପୂର୍ଣ୍ଣମୀ ଓ ହୋଲି ଉତ୍ସବର ଏକ ପବିତ୍ର ସମୟରେ ଆହ୍ୱାନର ଆଗମନ ହେତୁ ଚଳିତ ମାସର ପତ୍ରିକାର ପ୍ରଚ୍ଛଦକୁ ଏହି ପରି ସଜେଇ ଦିଆଯାଇଛି । ଓଡ଼ିଶୀ ନୃତ୍ୟରତା ନୃତ୍ୟାଙ୍ଗନା ଆମକୁ ବିଶ୍ୱବ୍ୟାପୀ ସକଳ ମହିଳା ମାନଙ୍କ ଶକ୍ତି, ଧୈର୍ଯ୍ୟ ଓ ସନ୍ତୁଳନତାକୁ ଦର୍ଶାଉଛି । ନିମ୍ନରେ ଦିଆଯାଇଥିବା ଚିତ୍ରରେ ଭିନ୍ନ ଭିନ୍ନ ରଙ୍ଗରେ ରଙ୍ଗାୟିତ ଯୁବଶକ୍ତିକୁ ଦର୍ଶାଇ ଦିଆଯାଇଛି ।

## ଆହ୍ୱାନ ପ୍ରକାଶନ ବିଷୟରେ ସମ୍ୟକ୍ ବିବରଣୀ

- ଆହ୍ୱାନ ଇ-ପତ୍ରିକା ଓଡ଼ିଶାରୁ ପ୍ରକାଶିତ ପ୍ରଥମ ଏବଂ ଏକମାତ୍ର ସଂପୂର୍ଣ୍ଣ ଓଡ଼ିଆରେ ପ୍ରକାଶିତ ସାହିତ୍ୟ ଇ-ପତ୍ରିକା ।
- ଏହା ପ୍ରତ୍ୟେକ ମାସର ପ୍ରଥମ ସପ୍ତାହରେ ପ୍ରକାଶିତ ହୋଇଥାଏ ।
- ବେଳେ ବେଳେ ପୂଜାପର୍ବପର୍ବାଣୀ ସମୟରେ ସମୟୋପଯୋଗୀ ବିଶେଷ ସଂସ୍କରଣ ମାନ ମଧ୍ୟ ପ୍ରକାଶିତ ହୁଏ ।
- ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗ ଯଥା, ଗଳ୍ପ, କବିତା, ପ୍ରବନ୍ଧ, ରମ୍ୟ ରଚନା, ଶିଶୁ ରଚନା, ଭ୍ରମଣ କାହାଣୀ ଇତ୍ୟାଦି ଏଥିରେ ପ୍ରକାଶିତ ହୁଏ ।
- ଏହି ପତ୍ରିକାରେ ଲେଖା ପ୍ରକାଶିତ କରିବା ପାଇଁ ନୂଆ ଓ ପୁରୁଣା ଉଭୟ ସାହିତ୍ୟକାରଙ୍କୁ ପ୍ରୋତ୍ସାହନ ଦିଆଯାଇଥାଏ ।
- ଯେହେତୁ ଏହି ପତ୍ରିକା ନିଃଶୁଳ୍କ ବିତରଣ ନିମିତ୍ତ ଉଦ୍ଦିଷ୍ଟ ତେଣୁ ଲେଖକ ଲେଖିକା ମାନଙ୍କୁ କୌଣସି ପ୍ରକାରର ପ୍ରୋତ୍ସାହନ ରାଶି ଦିଆଯାଏ ନାହିଁ ।
- ପାରିଶ୍ରମିକ ଆଶା କରୁଥିବା ଲେଖକ ଲେଖିକା ମାନେ ନିଜ ଲେଖା ବ୍ୟବସାୟିକ ପତ୍ରପତ୍ରିକାକୁ ପଠାଇ ପାରିବେ ।
- ଏହି ପତ୍ରିକା ପ୍ରତ୍ୟେକ ମାସରେ ଇଣ୍ଟରନେଟ୍‌ରେ ନିଃଶୁଳ୍କ ପଢ଼ିବା ପାଇଁ ଉପଲବ୍ଧ ହୋଇଥାଏ ।
- ପାଠକ ଚାହିଁଲେ ଏହି ପତ୍ରିକାର ଗୋଟିଏ ପ୍ରତିଲିପି ନିଜ କଂପ୍ୟୁଟରରେ ଡ଼ାଉନ୍‌ଲୋଡ୍ କରି ପାରିବେ ।
- ଏହି ପତ୍ରିକା ଉନ୍ନତି ହେତୁ ଆପଣଙ୍କ ସହାୟତା ଆମର ଏକାନ୍ତ କାମ୍ୟ ।
- ଲେଖକ ଲେଖିକା ମାନେ ନିଜ କୃତି ଆମ ନିକଟକୁ ଡ଼ାକଦ୍ୱାରା କିମ୍ବା ଇ-ମେଲ୍ ଦ୍ୱାରା ପଠାଇପାରିବେ ।
- ଡ଼ାକ ଦ୍ୱାରା ପଠାଉଥିଲେ ନିଜ ଲେଖାକୁ ଧଳା କାଗଜର ଗୋଟିଏ ପାର୍ଶ୍ୱରେ ନିର୍ଭୁଲ ହସ୍ତାକ୍ଷରରେ ଲେଖି ପଠାନ୍ତୁ, କିମ୍ବା ଟାଇପ୍ କରି ମଧ୍ୟ ପଠାନ୍ତୁ ।
- ଇ-ମେଲ୍ ଦ୍ୱାରା ପଠାଉଥିଲେ ଲେଖାକୁ ଲେଖି ସାରିବ ପରେ ସ୍କାନିଂ କରି ଆମ ଇ-ମେଲ୍ ଠିକଣାରେ ପଠାନ୍ତୁ ।
- ଆହ୍ୱାନର ପ୍ରକାଶନ ସଂପୂର୍ଣ୍ଣ ପରିବେଶ ଅନୁକୂଳ, କାରଣ ଏହାଦ୍ୱାରା କାଗଜର ବ୍ୟବହାର କମ ହୋଇଥାଏ, ଯେଉଁଥିପାଇଁ ଗଛ କାଟିବାକୁ ପଡ଼େନାହିଁ ।

ଆମକୁ ଲେଖା ପଠାଇବା ଠିକଣା : -

# ଡ଼ା ଜ୍ୟୋତି ପ୍ରସାଦ ପଟ୍ଟନାୟକ

ଏମ୍.ବି.ବି.ଏସ୍, ପିଜିଡ଼ିଏମ୍‌ସିଏଚ୍, ପିଜିଡ଼ିଏଚ୍‌ଏମ୍
ବୀମା ନଗର, ବ୍ରହ୍ମପୁର, ୭୬୦୦୧୦, ଓଡ଼ିଶା, ଫୋନ୍:- ୯୬୧୯୬୨୧୬୦ / ୯୦୪୦୯୮୫୪୬୩
ଇ-ମେଲ୍ : aahwaan@gmail.com

# ସୂଚୀପତ୍ର



# ସମ୍ପାଦକୀୟ

କଥା, କବିତା ଓ ପ୍ରେମ କବିତା ଏବେ ଫେସ୍‌ବୁକ୍‌ରେ ସମସ୍ତଙ୍କ ମୁହଁରେ ଗୋଟିଏ କଥା, ଆସ କବିତା ଲେଖିବା, ଅନ୍ତତଃ ଚେଷ୍ଟା କରିବା । ଆହ୍ୱାନ ଓଡ଼ିଆ ପରିବାରର ଏକ କ୍ଷୁଦ୍ର ପ୍ରଚେଷ୍ଟା ଏବେ ଓଡ଼ିଆ ସାହିତ୍ୟ କ୍ଷେତ୍ରକୁ ବିସ୍ତାର କରିବାପାଇଁ ଅନେକଙ୍କୁ ଖୋରାକ ଯୋଗାଇ ଚାଲିଛି । ଦିନସାରା ଅଫିସରେ ବସି ସରକାରୀ ବେସରକାରୀ କାର୍ଯ୍ୟାଳୟର କାମ କରୁଥିବା କର୍ମଚାରୀ ମଧ୍ୟ ସମୟ ବାହାର କରି କବିତା ଲେଖିବାକୁ ଚେଷ୍ଟା କରୁଛନ୍ତି । ଟିଭି ଆଗରୁ ମୁହଁ ବୁଲାଉ ନଥିବା ଆମ ଓଡ଼ିଆ ଘରର ଝିଅ ବୋହୁମାନେ ଏବେ ଏତେ ସୁନ୍ଦର କବିତା ସବୁ ଲେଖୁଛନ୍ତି ଯେ ଦେଖିଲେ ମନେ ହେଉଛି, ଆମ ଭାଷା ଆମ ରକ୍ତରେ ସ୍ଥାଣୁ ଅବସ୍ଥାରେ ରହିଛି । ନୋହିଲେ ଏତେ ଶୀଘ୍ର ଏତେ ସବୁ କବିତା ପ୍ରେମୀ ଆସିଲେ କେଉଁଠୁ ? କିଏ କହୁଥିଲା ଯେ, ଆମ ଭାଷା ଆମ ସାହିତ୍ୟ ଆମ ସଂସ୍କୃତି ଅବକ୍ଷୟମୁଖୀ ? ନା, ଜମା ନୁହେଁ । ଆମ ଭାଷା ଆମ ସାହିତ୍ୟ ପୂର୍ବବତ୍ ସମୃଦ୍ଧ ଓ ସ୍ଥାୟୀ ହୋଇ ରହିଛି ଏବଂ ସମ୍ଭବତଃ ଆମର ଆଗାମୀ ଅନେକ ପୀଢ଼ି ପର୍ଯ୍ୟନ୍ତ ଏମିତି ରହିବ । କବି ସମ୍ରାଟ ଉପେନ୍ଦ୍ରଭଞ୍ଜ, କବିସୂର୍ଯ୍ୟ ବଳଦେବ ରଥଙ୍କ ପରି ମହାନ କବି ଓ ସ୍ରଷ୍ଟାଙ୍କ ଜମିରେ ଜନ୍ମ ନେଇଥିବା ପ୍ରତ୍ୟେକ ମଣିଷ ଜଣେ ଜଣେ କବି, ଏଥିରେ ଦ୍ୱିମତ ନାହିଁ । ଖାଲି ଯେ କାଗଜ ପତ୍ରରେ କବିତା ଲେଖି ପୁରସ୍କାର ପାଇଗଲେ ହିଁ ଜଣେ କବି ବୋଲି କୁହାଇବ ସେ ବିଶ୍ୱାସ ଆମର ନାହିଁ । ପଦ ପଦକରେ କଥାକୁ ମୋଡ଼ିଭାଙ୍ଗି ସୁର ଦେଇ ଥଟ୍ଟା ପରିହାସ ଛଳରେ ହେଉପଛେ କହି ପାରୁଥିବା ସବୁ କବିତା ପଦବାଚ୍ୟ ହେବ । କବିତା ବିଭିନ୍ନ ପ୍ରକାରର ହୋଇପାରେ, ଅଧୁନା ଯୁଗରେ କବିତା ଲେଖିବା ପାଇଁ ଆଉ ଗୋଟିଏ ଗୋଟିଏ କବିତା ଲେଖିବା ପାଇଁ ଚିନ୍ତା କରିବା ଭଳି ସମୟ ଓ ସାମର୍ଥ୍ୟ ସମ୍ଭବତଃ ଆମ ପାଖରେ ନାହିଁ, ତେଣୁ ପୂର୍ବପରି ଗୀତି କବିତାରେ ସୃଷ୍ଟି ବହୁଳ ଭାବରେ ସମ୍ଭବ ହୋଇ ପାରୁନାହିଁ, କିନ୍ତୁ ଯାହା ବି ହେଉଛି ସବୁ ଅର୍ଥପୂର୍ଣ୍ଣ ଏବଂ ସାହିତ୍ୟିକ ଏଥିରେ ଦ୍ୱିମତ ନାହିଁ ।

ପରିବର୍ତ୍ତିତ ଯୁଗରେ ସାହିତ୍ୟ ମଧ୍ୟ ନିଶାରୁ ପେଷାରେ ପରିଣତ ହୋଇଗଲାଣି । ଖବର କାଗଜରେ ସାହିତ୍ୟ ଓ ପୁରସ୍କାରକୁ ନେଇ ଉଠୁଥିବା ନିତିଦିନିଆ ବିବାଦ ସବୁ ଦେଖିଲେ ଦୁଃଖ ଲାଗେ, ହେଲେ ସେ ସବୁ ଉପରେ ଚର୍ଚ୍ଚା କରିବା ଭଳି ସାମର୍ଥ୍ୟ ଆପଣ ଓ ଆମ ଭଳି ସାହିତ୍ୟପ୍ରେମୀଙ୍କର ନାହିଁ । ସେ ସବୁ ସରକାରୀ କାମ । ସରକାର ଯାହା ଚାହିଁବେ ହେବ । ଆମେ ସେଥିରେ କିଛି କରି ପାରିବା ନାହିଁ, ହେଲେ ଏହି ସଂସ୍କରଣରେ ପ୍ରକାଶିତ ଭାଇ ଡ଼ଃ କୁଳାଙ୍ଗାରଙ୍କ ଲିଖିତ 'ଜଣେ ପୁରସ୍କୃତ ଲେଖକଙ୍କ ସହ କଥାବାର୍ତ୍ତା'ରେ ସେ ବ୍ୟଙ୍ଗଛଳରେ ସାହିତ୍ୟକୁ ନେଇ ହେଉଥିବା ରାଜନୀତି ଉପରେ ଦୃଷ୍ଟିପାତ କରିଛନ୍ତି । ପୁରସ୍କାର ପାଇବା ପାଇଁ ଜଣେ ନିଜକୁ ଲେଖକ ଅପେକ୍ଷା ତୋଷାମଦକାରୀ ଭାବରେ ଉପସ୍ଥାପନ କରିବାପାଇଁ ପଛାଏ ନାହିଁ, ଏହା ବାସ୍ତବତା ଆଉ ସେ ବାସ୍ତବତାକୁ ଯେତେ ଲୁଚେଇବାକୁ ଚେଷ୍ଟା କଲେ ବି ଦେଖାଯାଉଛି । ଓଡ଼ିଆରେ ପିଲାଦିନେ ଗୋଟିଏ କଥା ଆମେ ଶୁଣିଥିଲେ, 'ଲୁଚିଛି ନା ଗୋଡ଼ ଦି'ଟା ଦିଶୁଛି' ସେଇ ନ୍ୟାୟରେ ବର୍ତ୍ତମାନ ସାହିତ୍ୟ ଯେ ରାଜନୀତି ସହ ଜଡ଼ିତ ହୋଇଗଲାଣି ତାହା ଆମେ ସମସ୍ତେ ଜାଣିଗଲେଣି । ଛାଡ଼ନ୍ତୁ ଆମକୁ ସେଥିରେ କିଛି ଲାଭ ମିଳିବ ନାହିଁ । ଆମର ମୂଳ ଲକ୍ଷ୍ୟ ହେଉଛି କବିତାଟିଏ ଲେଖିବା ଆଉ ଆମ ପରି ସାହିତ୍ୟ ପ୍ରେମୀ ମାନଙ୍କ ପାଖରୁ ସେଇ କବିତା ବାବଦରେ କିଛି ମନ୍ତବ୍ୟ ଜାଣିବା । ସେଇ ମହାନ ଉଦ୍ଦେଶ୍ୟକୁ ସମ୍ମାନ ଦେଇ ଆମେ ଆମ ଚଲାପଥରେ ଆଗେଇଯିବା ।

ସମଗ୍ର ଜମ୍ବୁଦ୍ୱୀପରେ ଶାନ୍ତ ଓ ନିଷ୍କପଟ ଭାବରେ ଖ୍ୟାତ ଉତ୍କ ପ୍ରଦେଶ ବା ଆଧୁନିକ ଓଡ଼ିଶା ଏବେ ଯେ କଳୁଷିତ ହେବାରେ ଲାଗିଛି ତାହା ସମସ୍ତେ ମାନିବେ । ନିତିଦିନିଆ ଘଟଣାବଳୀ ଏହାକୁ ଆହୁରି କଳୁଷିତ କରିବାରେ ଲାଗିଛି । ମହାପ୍ରଭୁ ଶ୍ରୀ ଜଗନ୍ନାଥଙ୍କ ଭୂଇଁ ଯେଉଁଠି ନାରୀକୁ ମାଆ ବା ମହାଲକ୍ଷ୍ମୀ ବୋଲି ଆମେ କହୁଛେ, ସେଇ ଭୂଇଁରେ ଆଜି ନାରୀ ଲୁଣ୍ଠିତା । ଏହାକୁ ନିଜ କବିତାରେ ପରିପ୍ରକାଶ କରିଛନ୍ତି କବୟତ୍ରୀ ବନ୍ଦନା ପଣ୍ଡା । ଚଳିତ ସଂସ୍କରଣରେ ତାଙ୍କର କବିତା 'ନାରୀ ନିର୍ଯ୍ୟାତନା' ସାମ୍ପ୍ରତିକ ସମାଜରେ ନାରୀର ସ୍ଥାନକୁ ନିଛକ ଭାବରେ ଉପସ୍ଥାପନ କରିଛନ୍ତି ସେ । ଯୁଗ ଯୁଗରୁ ଆମ ସମାଜ ନାରୀକୁ ଉଚ୍ଚସ୍ଥାନ ଦେଇ ଆସିଥିଲେ ସୁଦ୍ଧା ନାରୀକୁ ଲୁଣ୍ଠନ କରିବାରେ କୌଣସି ପ୍ରକାସ ଅନୁଶୋଚନା କରିନାହିଁ । ହେଲେ ଏଥିପାଇଁ ଦୋଷୀ କିଏ ? କେବଳ କେତେଜଣ ନର ରୂପୀ ପିଶାଚଙ୍କ ଯୋଗୁଁ ସମଗ୍ର ରାଜ୍ୟ ଏବେ ନାରୀ ନିର୍ଯ୍ୟାତନା ଶିରୋନାମାରେ ଖ୍ୟାତ ହୋଇଛି । ଏହାକୁ ବନ୍ଦ କରିବା ପାଇଁ ଉପାୟ କଣ ? ନାରୀ ଯେତେଦିନ ଯାଏଁ ନିଜକୁ ଅବଳା ଦୁର୍ବଳା ବୋଲି ଭାବୁଥିବ, ସେତେ ଦିନ ଯାଏଁ ତା' ଉପରେ ନିର୍ଯ୍ୟାତନା କରିବା ପାଇଁ ଉଭୟ ନର ଓ ନାରୀ ଆଗଭର ହେଉଥିବେ । ପରିବାର ଭିତରେ ଶାଶୁ ନଣନ୍ଦ, ବାହାରେ ଅଜଣା ଅପରିଚିତ ଲୋକ... ସମସ୍ତେ ତା'କୁ ଲୁଣ୍ଠିତା ହୋଇଥିବାର ଦେଖିବା ପାଇଁ ଆକୁଳ ହେବେ । ସବୁବେଳେ ପର ଉପରେ ନିର୍ଭରଶୀଳ ହେବାର ଗୁଣ ତ୍ୟାଗ କରି ନିଜକୁ ନିର୍ଭରଶୀଳ ଓ ଆତ୍ମପରିଚୟ ସୃଷ୍ଟି କରିବା ଦିଗରେ ଅଗ୍ରଗାମୀ ହେବାକୁ ହେବ । ଯେଉଁମାନେ ନାରୀକୁ ଅବଳା ଦୁର୍ବଳା ବୋଲି ଭାବି ଅତ୍ୟାଚାର କରୁଛନ୍ତି ସେମାନଙ୍କୁ ଉଚିତ ଦଣ୍ଡ ବିଧାନ କରିବାକୁ ହେବ । ତେବେ ଯାଇ ସମାଜରେ ନାରୀର ସ୍ଥାନ ଉଚ୍ଚ ହୋଇ ପାରିବ ।

ବିଗତ ମାସରେ ଆମ ରାଜ୍ୟର ପଶ୍ଚିମରେ ଥିବା ବଲାଙ୍ଗୀର ଜିଲ୍ଲାର ଏକ ପଲ୍ଲୀରେ ଶତାଧିକ ପଶୁପକ୍ଷୀଙ୍କୁ ବଳିଦିଆଗଲା । ଏହା ମାତ୍ର ଦିନିକିଆ ଘଟଣା ନୁହେଁ, ପ୍ରତିବର୍ଷ ଏଇମିତି ଲକ୍ଷାଧିକ ପଶୁପକ୍ଷୀଙ୍କୁ ମାନସିକ ନାମରେ ବିଭତ୍ସ ଭାବରେ ଆବାଳବୃଦ୍ଧ ବନିତାଙ୍କ ସମ୍ମୁଖରେ ହତ୍ୟା କରାଯାଉଛି । ପ୍ରଶାସନ ଓ ଜନ ସଚେତନତା ପାଇଁ କାର୍ଯ୍ୟରତ ସଂସ୍ଥାମାନେ ନିରବ ଦର୍ଶକ ହୋଇ ରହିଯାଉଛନ୍ତି । କାହିଁକି ହେଉଛି ଏହା ? ଧର୍ମ ନାମରେ କୌଣସି ପଶୁପକ୍ଷୀ ବା ମନୁଷ୍ୟକୁ ବଳିଦେବା କେତେଦୂର ଯୁକ୍ତିଯୁକ୍ତ ସେ ବିବାଦରେ ଆମେ ଚିନ୍ତା କରିବା ଆବଶ୍ୟକତା ରହିଛି । ହେଲେ ଏହାପଛରେ ଏକ ଦୃଢ଼ ଅନ୍ଧବିଶ୍ୱାସ ଯେ ରହିଛି ତାହା ଆମେ ଅନେକ ଜାଣୁ । ଭଗବାନଙ୍କ ପାଖରେ ମାନସିକ ରଖି କିଛି ପାଇବା ଆଶାରେ ଅନେକ ଲୋକ ନିରୀହ ପଶୁପକ୍ଷୀଙ୍କୁ ବଳି ଦେଉଛନ୍ତି, ଏହାଠୁ ବଳି ଲଜ୍ଜାଜନକ କଥା ଆଉ କଣ ହୋଇପାରେ । ଏକବିଂଶ ଶତାବ୍ଦୀରେ ପାଦ ଦେଇ ସାରିଥିବା ମାନବଜାତି ଯେ ପାଞ୍ଚ ହଜାର ବର୍ଷରୁ ଚଳିତ ଅନ୍ଧବିଶ୍ୱାସର ଡ଼ୋରିରୁ ନିଜକୁ ମୁକ୍ତି କରି ପାରିନି ତାହାର ନିଛକ ଉଦାହରଣ ହେଉଛି ଶୁଲିଆ ପଶୁବଳି । ଏହାଠୁ ବଳି ଆମୋଦକର ହେଉଛି ଆଜିକାଲି ଟିଭିରେ ଦେଖାଯାଉଥିବା ବିଭିନ୍ନ ବିଜ୍ଞାପନ । ସାଧୁମହାତ୍ମା ମାନେ ବିକ୍ରି କରୁଛନ୍ତି ଯନ୍ତ୍ର, ତାବିଜ, ମୁଦି ଆଉ କିଏ ଦେଖାଉଛି ସ୍ୱପ୍ନ ସୁନ୍ଦର ଭବିଷ୍ୟତର । ଏହି ପରି ଅନ୍ଧବିଶ୍ୱାସକୁ ବଢ଼ାଉଥିବା ସବୁ ବ୍ୟବସ୍ଥାକୁ ଆଡ଼ ଆଖିରେ ଦେଖିବା ଓ ବିହିତ ପଦକ୍ଷେପ କିପରି ନେବା ସେଇ ବିଷୟକୁ ନେଇ ଆମ ଲେଖକ ବାଲ୍ମୀକି ନାୟକଙ୍କ ବିଶେଷ ଉପସ୍ଥାପନ 'ଅନ୍ଧବିଶ୍ୱାସର ହେତୁ' ଆପଣ ମାନଙ୍କୁ ଭଲ ଲାଗିବ ବୋଲି ଆଶା କରୁଛି ।

ବିଗତ କିଛିଦିନରେ ଓଡ଼ିଶାର ତାପମାତ୍ରାରେ ଅହେତୁକ ବୃଦ୍ଧି ପରିଲକ୍ଷିତ ହେଉଛି । ଅବଶ୍ୟ ଗ୍ରୀଷ୍ମର ଆଗମନ ହୋଇଗଲାଣି, ତେଣୁ ନିଜକୁ ତଥା ନିଜ ପରିବାର ଓ ବନ୍ଧୁମାନଙ୍କୁ ବିଶେଷ ସୁରକ୍ଷା ଚେତାବନୀ ଦେବାକୁ ଭୁଲିବେ ନାହିଁ, ଟାଣ ଖରାରେ ବାହାରକୁ ଯିବେ ନାହିଁ, ଯଦି ଯିବେ ସାଥିରେ ଛତା, ଜୋତା, ପଗଡ଼ି କିମ୍ବା ଟୋପି ପିନ୍ଧିକରି ଯିବେ । ପ୍ରଚୁର ପରିମାଣରେ ପାଣି ପିଇବେ । ହାଲିଆ ଲାଗିଲେ ଥକ୍କା ମାରିବା ପାଇଁ ଛାଇ ସ୍ଥାନ ଦେଖି ବସିଯିବେ । ଅଧିକ ଝାଳ ହେଉଥିଲେ, ଲୁଣ ଚିନି ମିଶ୍ରିତ ପାଣି ପିଇପାରିବେ କିମ୍ବା ସ୍ୱାସ୍ଥ୍ୟ କେନ୍ଦ୍ରରୁ ଓଆର୍ଏସ୍ ଦ୍ରବଣ ଆଣି ପିଇ ପାରିବେ । ଯଦି ଖରାରେ ଚାଲୁଥିବା ସମୟରେ କେହି ବ୍ୟକ୍ତି ଚେତାହରାଇ ବସନ୍ତି ତେବେ ତୁରନ୍ତ ଥଣ୍ଡା ପାଣିରେ ତାଙ୍କ ଦେହକୁ ଧୋଇଦେବେ ଆଉ ପଙ୍ଖା କିମ୍ବା ବିଞ୍ଚଣା ସାହାଯ୍ୟରେ ପବନ କରିବାକୁ ଚେଷ୍ଟା କରିବେ । ବୃଦ୍ଧବ୍ୟକ୍ତି, ରୋଗୀ କିମ୍ବା ଛୋଟ ଶିଶୁ ହୋଇଥିଲେ ତୁରନ୍ତ ସ୍ୱାସ୍ଥ୍ୟକେନ୍ଦ୍ରକୁ ନେବା ବ୍ୟବସ୍ଥା କରିବେ । ଓଡ଼ିଶାରେ ପ୍ରତିବର୍ଷ ଅନେକ ଲୋକ ଅଂଶୁଘାତ ଜନିତ କାରଣରୁ ମୃତ୍ୟୁବରଣ କରନ୍ତି । ତେଣୁ ଆପଣ ମାନେ ସାବଧାନ ରହି ଚଳିବେ ।

ଫେସବୁକ୍‌ରେ ଆହ୍ୱାନ ଓଡ଼ିଆ ପରିବାରର ସଦସ୍ୟ ସଂଖ୍ୟା ଦିନକୁ ଦିନ ବଢ଼ିବାରେ ଲାଗିଛି । ସମଗ୍ର ଓଡ଼ିଆ ଜାତିକୁ ଏକ ସୂତ୍ରରେ ବାନ୍ଧିରଖିବାର ପ୍ରୟାସ ହେଉଛି ଆହ୍ୱାନ । ଆପଣଙ୍କ ଯେଉଁ ବନ୍ଧୁମାନେ ଆହ୍ୱାନ ବିଷୟରେ ଜାଣି ନାହାନ୍ତି ସେମାନଙ୍କୁ ଆହ୍ୱାନ ବିଷୟରେ ଜଣାନ୍ତୁ ଏବଂ ଆହ୍ୱାନ ପଢ଼ିବା ପାଇଁ ଉତ୍ସାହିତ କରନ୍ତୁ ।

ଶେଷରେ ଆଶା କରୁଛି ପୂର୍ବ ସମସ୍ତ ସଂସ୍କରଣ ପରି ଏହି ସଂସ୍କରଣ ମଧ୍ୟ ଆପଣ ମାନଙ୍କୁ ଆମୋଦିତ କରିବ ।

ଧନ୍ୟବାଦ

## ଡ଼ା ଜ୍ୟୋତି ପ୍ରସାଦ ପଟ୍ଟନାୟକ

ଏମ୍.ବି.ବି.ଏସ୍, ପିଜିଡ଼ିଏମ୍‌ସିଏଚ୍, ପିଜିଡ଼ିଏଚ୍‌ଏମ୍

ସମ୍ପାଦକ, ଆହ୍ୱାନ ଇ-ପତ୍ରିକା

## ଅଂଶୁଘାତରୁ ରକ୍ଷା ପାଇବାର ଉପାୟ

ଓଡ଼ିଶାରେ ସାଧାରଣତଃ ଗ୍ରୀଷ୍ମମାସ ମାନଙ୍କରେ ଅହେତୁକ ତାପମାତ୍ରା ବୃଦ୍ଧିପାଏ, ଏବଂ ଏହି ସମୟରେ ଅନେକ ଲୋକ ଅଂଶୁଘାତର ଶୀକାର ହୋଇ ମୃତ୍ୟୁବରଣ କରିଥାନ୍ତି । ତେଣୁ ଅଂଶୁଘାତ ପ୍ରତି ସାବଧାନତା ହିଁ ଏହାଠୁ ରକ୍ଷା ପାଇବାର ଏକ ମାତ୍ର ଉପାୟ ।

### ଅଂଶୁଘାତ କଣ ଓ ଏହା କାହିଁକି ହୁଏ ?

ଖରାଦିନ ମାନଙ୍କରେ ବାୟୁମଣ୍ଡଳର ତାପମାତ୍ର ବଢ଼ିଗଲା ପରେ ଦେହରୁ ଅତ୍ୟଧିକ ଝାଳ ବାହାରେ ଏବଂ ଶରୀରରୁ ଜଳୀୟାଂଶ କ୍ଷୟ ହୋଇଯାଏ । ଏହା ଫଳରେ ଆମ ଶରୀରର ସାମାନ୍ୟ ପ୍ରକ୍ରିୟା ସବୁ ବାଧାପ୍ରାପ୍ତ ହୁଏ ଏବଂ ତାପମାତ୍ରା ବୃଦ୍ଧିପାଏ । ଶରୀରର ତାପମାତ୍ରା ୪୧ ଡ଼ିଗ୍ରୀରୁ ଅଧିକ ହୋଇଗଲେ ମସ୍ତିଷ୍କ କାମ କରିବା ବନ୍ଦ କରିଦିଏ ଏବଂ ଅଂଶୁଘାତ ଦ୍ୱାରା ଆକ୍ରାନ୍ତ ବ୍ୟକ୍ତି ଜଣକ ଚେତା ହରାଇବା ସହିତ ମୃତ୍ୟୁବରଣ ବି କରି ପାରେ ।

### ଅଂଶୁଘାତରୁ ରକ୍ଷା ପାଇବା କେମିତି ?

ଖରାଦିନ ମାନଙ୍କରେ ପ୍ରଚୁର ପରିମାଣର ପାଣି ପିଅନ୍ତୁ । ଅତି ଆବଶ୍ୟକ ନଥିଲେ ଖରାରେ ବାହାରକୁ ବାହାରନ୍ତୁ ନାହିଁ । ଛତା / ପଗଡ଼ି / ଟୋପି ବ୍ୟବହାର କରନ୍ତୁ । ସାଥିରେ ପାଣି ନେଇ ଯାଆନ୍ତୁ । ହାଲିଆ ଲାଗିଲେ ଛାଇ ସ୍ଥାନ ଦେଖି ରହିଯାଆନ୍ତୁ । ମୁହଁ ବୁଲାଇଲେ / ଚେତାଶୂନ୍ୟ ହେବାପରି ଲାଗିଲେ ଓଆର୍‌ଏସ୍ ଦ୍ରବଣ ପିଅନ୍ତୁ । ଏବଂ ଶରୀର ତାପମାତ୍ରା କମ କରିବା ପାଇଁ ବ୍ୟବସ୍ଥା କରନ୍ତୁ । ଖରାରେ ଚାଲୁଥିବା ସମୟରେ ଯଦି କେହି ବ୍ୟକ୍ତି ଚେତା ହରାନ୍ତି ତେବେ ତାଙ୍କୁ ତୁରନ୍ତ ହାସପାତାଳ ନେବା ବ୍ୟବସ୍ଥା କରନ୍ତୁ । ଦେହକୁ ଥଣ୍ଡା ରଖିବା ପାଇଁ ଥଣ୍ଡା ପାଣି, ପଙ୍ଖା, ବିଞ୍ଚଣା ଆଦିର ବ୍ୟବହାର କରନ୍ତୁ ।

**ଆହ୍ୱାନ ଓଡ଼ିଆ ପରିବାର**

International Women's Day
Connecting girls, inspiring futures

# ବିଶ୍ୱ ମହିଳା ଦିବସ

ପ୍ରତିବର୍ଷ ମାର୍ଚ୍ଚ ମାସର ୮ ତାରିଖକୁ ବିଶ୍ୱ ମହିଳା ଦିବସ ଭାବରେ ପାଳନ କରାଯାଇଥାଏ । ବିଭିନ୍ନ ଦେଶରେ ଏହା ବିଭିନ୍ନ ଭାବରେ ପାଳନ କରାଯାଇଥାଏ । ବିଶେଷତଃ ମହିଳା ମାନଙ୍କ ପ୍ରତି ସମ୍ମାନ, ସ୍ନେହ ଓ ଶ୍ରଦ୍ଧାର ନିଦର୍ଶନ ନିମନ୍ତେ ଏହି ଦିବସର ପାଳନର ତାତ୍ପର୍ଯ୍ୟ ରହିଛି । ଏବଂ ମହିଳା ମାନଙ୍କ ଅର୍ଥନୈତିକ, ରାଜନୈତିକ ଏବଂ ସାମାଜିକ ଅଭିବୃଦ୍ଧିର ଉତ୍ସବ ଭାବରେ ଏହି ଦିନର ମହତ୍ତ୍ୱ ରହିଛି । କିଛି ଦେଶରେ ଏହି ଦିନକୁ ଏକ ସାଧାରଣ ଉତ୍ସବ ଭାବରେ ମଧ୍ୟ ପାଳନ କରାଯାଏ ଏବଂ ଛୁଟି ଘୋଷଣା କରାଯାଇଥାଏ । ମହିଳା ମାନଙ୍କୁ ସମାଜରେ ସେମାନଙ୍କ ଉଚିତ ସ୍ଥାନ ଦେବା ଏବଂ ସେମାନଙ୍କ ଉପଲବ୍ଧିକୁ ସର୍ବସାଧାରଣରେ ପ୍ରୋତ୍ସାହନ ଦେବା ତଥା ପ୍ରଶଂସା କରିବା ପାଇଁ ଏହି ଦିବସର ମହତ୍ତ୍ୱ ରହିଛି ।

ଆମେରିକାର ଏକ ରାଜନୈତିକ ଦଳ ସୋସିଆଲିଷ୍ଟ୍ ପାର୍ଟି ଅଫ୍ ଆମେରିକାର ଆହ୍ୱାନରେ ଫେବ୍ରୁଆରୀ ୨୮ ୧୯୦୯ ମସିହାରେ ପ୍ରଥମ ଥର ପାଇଁ ଏକ ମହିଳା ଦିବସ ପାଳନ କରାଯାଇଥିଲା ଅବଶ୍ୟ ଏହା କେବଳ ଆମେରିକା ମହାଦ୍ୱୀପରେ ହିଁ ସୀମିତ ଥିଲା । ଅଗଷ୍ଟ ୧୯୧୦ ମସିହାରେ ପ୍ରଥମ ବିଶ୍ୱ ମହିଳା ସମାବେଶର ଆୟୋଜନ କରାଗଲା । ସେହିଠାରେ ସମ୍ମିଳିତ ସମସ୍ତ ସଦସ୍ୟଙ୍କ ସହମତି କ୍ରମେ ଏକ ବିଶ୍ୱ ମହିଳା ଦିବସର ଅବଧାରଣା କରାଗଲା । ଜର୍ମାନୀର ସାମାଜିକ କର୍ମକର୍ତ୍ତା ଲୁଇ ଜିଟ୍ଜ୍ ଏହି ଦିବସର ପାଳନ ନିମନ୍ତେ ପ୍ରସ୍ତାବ ଆଣିଥିଲେ ଏବଂ ଏହାକୁ ସମର୍ଥନ କରିଥିଲେ କ୍ଲାରା ଜେଟ୍କିନ୍ । ବିଶ୍ୱର ଅନ୍ୟୁନ ୧୭ଟି ଦେଶରୁ ଆସିଥିବା ଶତାଧିକ ମହିଳା ସଦସ୍ୟାମାନେ ଏହାକୁ ସମର୍ଥନ କରିଥିଲେ । ଏହାର ପରବର୍ତ୍ତୀ ବର୍ଷ ୧୯୧୧ ରେ ପ୍ରଥମ ବିଶ୍ୱ ମହିଳା ଦିବସ ପାଳନ କରାଗଲା । ଦଶ ଲକ୍ଷରୁ ଅଧିକ ମହିଳା ବିଶ୍ୱର ବିଭିନ୍ନ ଦେଶରେ ଥାଇ ଏଇ ଦିବସକୁ ପାଳନ କଲେ । ବିଶେଷତଃ ଅଷ୍ଟ୍ରିୟା, ଡେନ୍ମାର୍କ, ଜର୍ମାନୀ ଓ ସ୍ୱିଜର୍ଲାଣ୍ଡରେ ଏହି ଦିବସ ବହୁ ଆଡ଼ମ୍ବରରେ ପାଳନ କରାଗଲା । ମହିଳା ମାନେ ପ୍ଲାକାର୍ଡ଼ ଧରି ମହିଳା ମାନଙ୍କ ସମାନ ଅଧିକାର, ଭୋଟ ଦେବା ଏବଂ ନିର୍ବାଚନରେ ଭାଗନେବା ଅଧିକାର, କର୍ମସଂସ୍ଥାନରେ ସମପରିମାଣର ନିଯୁକ୍ତି ସୁଯୋଗ ଦେବା ଇତ୍ୟାଦି ଦାବି ନେଇ ଶୋଭାଯାତ୍ରାମାନ ଆୟୋଜନ କରିଥିଲେ । ଅବଶ୍ୟ ଆମେରିକାରେ ତଥାପି ମହିଳା



ଦିବସ ଫେବୃଆରୀ ମାସର ଶେଷ ରବିବାର ଦିନ ହିଁ ପାଳନ ହେଉଥିଲା ।

୧୯୧୩ ମସିହାରେ ରୁଷିଆରେ ମହିଳା ମାନେ ମଧ୍ୟ ଫେବୃଆରୀ ମାସର ଶେଷ ରବିବାରକୁ ବିଶ୍ୱ ମହିଳା ଦିବସ ଭାବରେ ପାଳନ କରିଲେ । ୧୯୧୭ ମସିହାରେ ରୁଷିଆର ପ୍ରସିଦ୍ଧ ସେଣ୍ଟ୍ ପିଟର୍ସବର୍ଗ କ୍ଷେତ୍ରରେ ମହିଳାମାନେ ଫେବୃଆରୀ ଶେଷ ରବିବାର ( ଯାହା ଇଂରାଜୀ କ୍ୟାଲେଣ୍ଡରର ମାର୍ଚ୍ଚ ୮ ତାରିଖରେ ପଡ଼ିଥିଲା ) ଦିନ ଫେବୃଆରୀ ବିପ୍ଳବ ଆରମ୍ଭ କଲେ । ଏହାପରେ ତତ୍କାଳୀନ ରୁଷିଆର ରାଷ୍ଟ୍ରପତି ଲେନିନ୍ ଏହି ଦିନଟିକୁ ଛୁଟି ଦିବସ ଭାବରେ ଘୋଷଣା କରିବା ପାଇଁ ଚାହିଁଥିଲେ ହେଲେ ୧୯୬୫ ମସିହା ପର୍ଯ୍ୟନ୍ତ ମାର୍ଚ୍ଚ ୮ ଏକ କର୍ମଦିବସ ଭାବରେ ହିଁ ରହିଥିଲା । ମଇ ୮, ୧୯୬୫ ରେ ରୁଷିଆ ଆନୁଷ୍ଠାନିକ ଭାବରେ ମାର୍ଚ୍ଚ ୮ ତାରିଖକୁ ସରକାରୀ ଛୁଟି ଭାବରେ ଘୋଷଣା କଲା ।

ଚୀନରେ ମହିଳା ଦିବସ ୧୯୨୨ ରେ ଆରମ୍ଭ ହୋଇଥିଲା ସେହିପରି ସ୍ପେନ୍‌ରେ ୧୯୩୬ରେ । ଏହି ଦିନ ଚୀନରେ ମହିଳା ମାନଙ୍କ ଅଧା ଦିନର ଛୁଟି ଦିଆଯିବାର ବ୍ୟବସ୍ଥା ରହିଛି ।

ପାଶ୍ଚାତ୍ୟ ଦେଶମାନଙ୍କରେ ବିଶ୍ୱ ମହିଳା ଦିବସ ୧୯୭୭ ମସିହା ପରେ ଅଧିକ ଲୋକପ୍ରିୟ ହେଲା ଯେତେବେଳେ ଜାତିସଂଘ ସାଧାରଣ ବୈଠକରେ ସଦସ୍ୟମାନେ ମାର୍ଚ୍ଚ ୮ ତାରିଖକୁ ମହିଳା ମାନଙ୍କୁ ଅଧିକାର ଓ ବିଶ୍ୱ ଶାନ୍ତିର ଜାତିସଂଘ ଦିବସ ଭାବରେ ପାଳନ କରିବା ପାଇଁ ନିଷ୍ପତ୍ତି ନିଆଯାଇଥିଲା । ଏଇ ପରିପ୍ରେକ୍ଷୀରେ ପ୍ରତିବର୍ଷ ଏକ ଥିମ୍ ବା ଏହି ଦିବସର ତାତ୍ପର୍ଯ୍ୟ ହେତୁ ଏକ ବାକ୍ୟ ଦିଆଯାଇଥାଏ । ୨୦୧୨ ମସିହା ପାଇଁ ଏହି ଦିବସର ଥିମ୍ ହେଉଛି Empower Women – End Hunger and Poverty. ବିଶ୍ୱର ବିଭିନ୍ନ ସଭ୍ୟତାରେ ବର୍ତ୍ତମାନ ବି ମହିଳା ମାନେ ଘରର




ପୁରୁଷମାନଙ୍କ ଉପରେ ନିର୍ଭରଶୀଳ ରହିଛନ୍ତି ଏବଂ ସେମାନେ ନିଜର ଅର୍ଥନୈତିକ ଅଭିବୃଦ୍ଧି କରିବା ଦିଗରେ ଯତ୍ନବାନ ହେବା ପାଇଁ ଏହି ଦିବସର ତାତ୍ପର୍ଯ୍ୟ ଅନେକ ରହିଛି ।

ବିଶ୍ୱ ମହିଳା ଦିବସ ଉପଲକ୍ଷେ ଆହ୍ୱାନ ଓଡ଼ିଆ ପରିବାର ତରଫରୁ ସମସ୍ତ ମହିଳା ମାନଙ୍କୁ ଅନେକ ଅନେକ ଅଭିନନ୍ଦନ ।

ଧନ୍ୟବାଦ

ଡ଼ା ଜ୍ୟୋତି ପ୍ରସାଦ ପଟ୍ଟନାୟକ

# ବାଲିଯାତ୍ରା ଓ ଧ୍ରୁବତାରା



ମନୋଜ ଦାସ

ଉପରେ ଧୂମାଳ ନୀଳ ଆକାଶର ଅନନ୍ତ ଇସାରା -
ସେ ନୀଳିମା ସେପାରିରେ ଅଛି ପରା ଜୀବନର
ଭିନ୍ନ ଏକ ପରିଚ୍ଛନ୍ନ ଗୋପନ ଖସଡା -

ଆକାଶର ଇସାରାରୁ ଛୁଟି ନେଇ ଆମେ ଆପାତତ:
ଧୂଳି ବାଲି ପ୍ରାଣୋଚ୍ଛଳ୍ କୋଳାହଳେ ମତ୍ତ ।

ଏକ ଦିଗେ ମହାନଦୀ, ବହମାନ କାଳର ପ୍ରତୀକ
ଏ ମୁହୂର୍ତ୍ତେ ଆମେ କିନ୍ତୁ ସଂକଳିତ, ଅତି ସାମୟିକ,
ଦହିବରା, ଆଳୁଦମ୍, ଲଘୁ କିଛି ସଂଗୀତର ମାୟା,
ଚୂନି ଚୂନି କାମନାର ଚେନାଏ ଦୁନିଆ,
ପେନ୍ଥା ପେନ୍ଥା ସୁବିନ୍ୟସ୍ତ କବରୀରୁ ନିର୍ଗତ ମହକ
ବିଡି ଓ ସିଗ୍ରେଟ ଗନ୍ଧ ବିମିଶ୍ରିତ ରୋମାଞ୍ଚ କୁହୁକ
କିଛି କିଛି ଶୀତ ଏବଂ କାକରର ମୃଦୁ ଉପଦ୍ରବ
ଏବଂ ଜନତା ତନୁ ଉଷୁମରେ ତା'ର ପରାଭବ,
କଦାଚିତ୍ ପିକ୍‌ପକେଟ, ବେଣୀଟଣା, ଅଲୋଡା ଇଂଗିତ
କେହି ଜଣେ ମଦ୍ୟପର ବେପରୁଆ ଚେନାଚୁରୀ ଗୀତ
ଅଦୂରେ ଦଣ୍ଡାୟମାନ, ଅମିଳିତ ବିଚିତ୍ର ଦଂପତି
ଅଥର୍ବ କିଲ୍ଲାଟି ଏବଂ ଷ୍ଟାଡିୟମ୍-
ବୃଦ୍ଧସ୍ୟ ତରୁଣୀ ଭାର୍ଯ୍ୟା ଚହଟ ଶ୍ରୀମତି ।

"ଏକଦା ଆମରି ଲୋକେ ବାଲିଦ୍ୱୀପେ କରି ଅଭିଯାନ
ଆଣୁଥିଲେ ଧନରତ୍ନ, ଅବଶ୍ୟ ତା' ବିଗତ ସପନ !"
ୟୁରୋପୀୟ ପର୍ଯ୍ୟଟକେ କହୁଥିଲେ ଦେଶୀ ଦିଗ୍‌ଦର୍ଶକ,
"ସେହି ଭବ୍ୟ ଅତୀତର ବାଲିଯାତ୍ରା ଉଜ୍ଜ୍ୱଳ ସ୍ମାରକ ।"

"ବିସ୍ମୟ ବିସ୍ମୟ ବାବୁ ! ବଡ ଭଲ ତମର ଏ ଦେଶ !
ଆରେ ଆରେ ! ପର୍ସ ମୋର ଅନ୍ତର୍ହିତ ! ହାୟ ସର୍ବନାଶ !"
ଗତବର୍ଷ ଏହି ଦିନେ ଧନବତୀ ଯେ ସୌମ୍ୟା ଯୁବତୀ
"ଆସିବିନି ଆଉ କେବେ" କହିଥିଲେ ହୋଇ କ୍ରୁଦ୍ଧ ଅତି,
ଯେହେତୁ ଗୋଟାଏ ଯୁବା, ଟାଇ ଟ୍ରାଉଜର ପିନ୍ଧା ଗୋଟାଏ ମାଙ୍କଡ,
ଅନୁସରି ତାଙ୍କୁ ଠାଏଁ କରିଥିଲା କିଛି ହରବର,
ଯଥାବିଧି ସମାଗତା ସେହି ସୁଶ୍ରୀ ପୁନର୍ବାର ଆଜି

ଚୋରାଇ ଚୋରାଇ ଯେହ୍ନେ ଗହଳିରେ କାହାକୁ ବା ଖୋଜି

ଗହନ ଏ ବାଲିଯାତ୍ରା ସତେ ଅବା ପ୍ରାଣର ଗହନ,
ଧୂଳି ଧୂଆଁ, ନାନା ରଙ୍ଗେ ମଣିଷର ଏ ଅବଚେତନ !
ନିଶାର୍ଦ୍ଧରେ ଯେତେବେଳେ ସବୁ କିଛି ହୋଇଯିବ ମ୍ଳାନ,
ଲାଉଡ୍‌ସ୍ପିକର୍ ତଥା ବିଦ୍ୟୁତ୍‌ର ଉଜ୍ଜ୍ୱଳ ପ୍ଲାବନ,
ଆକାଶର ତାରା ମାନେ ହେଉଥିବେ କଥା ପରସ୍ପର,
ମହାନଦୀ ବକ୍ଷେ ତାଙ୍କ ପ୍ରତିବିମ୍ବ, ପ୍ରତିଧ୍ୱନୀ ତା'ର :
"ବୁଝିଲ - ନରନାରୀ ବର୍ଷ ପରେ ବର୍ଷ,
ହର୍ଷର ଶିକାରେ ଆସି ଲେଉଟନ୍ତି ପ୍ରାୟତଃ ବିମର୍ଷ
କ୍ଲାନ୍ତି ଓ ବିରକ୍ତି ସହ ପୁନର୍ବାର କିଞ୍ଚିତ୍ ଆଶ୍ୱାସ -
ହୁଏତ ଆସନ୍ତା ବର୍ଷ ମିଳିପାରେ ଏକମାତ୍ରା ଅଧିକ ଉଲ୍ଲାସ -
ସେ ଆଶା କି ବିଡମ୍ବନା ?" କହେ ଏକ ତାରା,
ଉତ୍ତର କହଇ ଆନ, "ବୃଥା ନୁହେଁ ପରା -
ଆଦିମ ସେ ଆସ୍ଥା ତଥା ମୃତ୍ୟୁହୀନ ସେ ମୃଦୁ ପ୍ରତ୍ୟୟ
ଯାହା ତାଡନାରେ ଏହି ବାଲିଯାତ୍ରା ଉଦ୍‌ବେଳ, ଅଥୟ
ଆବାଳ ବୃଦ୍ଧ ବନିତା ଯାହାର୍ ସଂଧାନେ
ପରସ୍ପର ଆକର୍ଷିତ, ସମବେତ ଏହି ଅନୁଷ୍ଠାନେ
ଆପଣାର ଅଭ୍ୟନ୍ତରେ ସୁପ୍ତ ତାହା, ଅଥଚ ଅଜ୍ଞାନ -
ଏ ଦଳାଚକଟା ମଧ୍ୟେ କରୁଥାଏ ତା'ର ଅନ୍ୱେଷଣ ।"

"ଏ ମେଳା ଉତ୍ସବ ତେବେ ଅସତ୍ୟ ଓ ସଂପୂର୍ଣ୍ଣ ଅଳିକ ?"
ପ୍ରଶ୍ନକରେ ତାରା ଏକ, ଉତ୍ତର ତା' ପରକ୍ଷେ ଆରେକ :

"ବହୁତ ଗଭୀର ବଂଧୁ ! ଗୂଢତର ସତ୍ୟର ସଂସ୍ଥିତି
ଆତ୍ମା ପ୍ରତି ଆତ୍ମାର ଯା' ଅଲଂଘ୍ୟ ସଂପ୍ରୀତି
ପ୍ରାୟତଃ ଚୁମ୍ବକ ଭଳି ଟାଣେ ପରସ୍ପରେ,
ଅଭିବ୍ୟକ୍ତ ଯାହା ହୁଏ ଅଜ୍ଞାନ ତିମିରେ
କେବେ ବା ସଦିଚ୍ଛା ରୂପେ, କେବେ ବା ସଂଘର୍ଷେ,
ଅବା ବାଲିଯାତ୍ରା ରୂପେ ଥରୁଟେ ବରଷେ ।"

ଆମୋଦର କ୍ଳାନ୍ତି ଅନ୍ତେ ନରନାରୀ ସ୍ୱଗୃହେ ସୁଷୁପ୍ତ,
ଧୂଳି ଧୂଆଁ ଅତିକ୍ରମି କରିବାକୁ ଆକାଶେ ଦୃକ୍‌ପାତ,
କାହାର ବା ଅଛି ତର ?
ଅବ୍ୟାହତ କିନ୍ତୁ ଯା'ର ଉଜ୍ଜ୍ୱଳ ଇସାରା,
ପ୍ରତ୍ୟୟର ଆଶୀର୍ବାଦ, ସିଏ ଧ୍ରୁବତାରା ।

ବି.ଦ୍ର. : ଓଡ଼ିଆ ଭାଷା ସାହିତ୍ୟର ବୟୋଜ୍ୟୋଷ୍ଠ ସାହିତ୍ୟକାର ଶ୍ରୀ ମନୋଜ ଦାସଙ୍କ ଅନୁମତିକ୍ରମେ ପ୍ରକାଶିତ

# ହୋଲି ଆସିଛି



ମିନାକ୍ଷୀ ବାରିକ

ସହର ଗାଁ ରେ କୋଳାହଳ ଆଜି... ଶୁଭେ ହସର କାକଳି
ବୁଢ଼ାଠାରୁ ଟୋକା ନାଚନ୍ତି ସଭିଏଁ... ଆସିଛି ଯେ ଆଜି ହୋଲି
ମନ୍ଦିରେ ଦେଉଳେ ଶୁଭିଲାଣି ଆଜି... ଘଣ୍ଟ ଆଉ ହୁଳୁହୁଳୀ
ବିମାନେ ଠାକୁରେ ବୁଲନ୍ତି ରେ ଆଜି... ପଞ୍ଚୁଦୋଳ ଖେଳି ଦୋଳି
ଗାଁ ମାନଙ୍କରେ ସଭା ଯେ ଚାଲିଛି... ଦୋଳ ଯାତରାର ପାଇଁ
ସହର କ୍ଳବରେ ବୈଠକ ବସୁଛି ବସନ୍ତ ଉତ୍ସବ ପାଇଁ

ବସନ୍ତ ଋତୁର ଆଗମନେ ଆଜି ବଉଳ ସମ୍ଭାର ନେଇ
ହୋଲି ଯେ ଆସିଛି ସବୁରି ହୃଦୟେ ଆନନ୍ଦ ବୋଳିବା ପାଇଁ
ଆମ୍ବ ଗଛ ଡ଼ାଳେ କୋଇଲି ଗାଉଛି କୁହୁ କୁହୁ ଗୀତ ପୁଣି
ଗୋପାଳ ଭାଇ ତା ଅଣ୍ଟା ଭିଡ଼ିଲାଣି ବାଡ଼ି ଖେଳ ହେବ ପୁଣି

ଜାତି, ଧର୍ମ, ବର୍ଣ୍ଣ... କିଛି ନୁହେଁ ଭାଇ... ଏଇ ଜୀବନ ଦୁଇଟି ଦିନର
ଭୁଲି ଭେଦ ଭାବ ନାଚ ଆଜି ଭାଇ... ଖେଳି ରଙ୍ଗ ଓ ଅବିର
ହୋଲି ଅସିଛି ରେ ବରଷକେ ପୁଣି... ଆଣିଛି ଆଶା ଓ ବିଶ୍ୱାସ
ତେଜି କ୍ରୋଧ, ଘୃଣା ଜାଗି ଉଠ ଆଜି... ମନରେ ଭର ହେ ହରଷ

ନାଲି, ହଳଦିଆ, ଗୋଲାପୀ, ସବୁଜ... କେତେ ଯେ ଆଣିଚ ରଙ୍ଗ
ସଭିଙ୍କ ଦେହରେ ବୋଳିଦିଅ ହୋଲି... ତୁମେ ଯେ ପ୍ରେମର ରଙ୍ଗ
ପ୍ରେମର ପରବ ପରା ଏଇ ହୋଲି... ଆସେ ହସି ଖିଲି ଖିଲି
ନାଚି ଗାଉଥିବା ପିଚକାରୀ ମାରି... ସବୁ ରାଗ ରଷା ଭୁଲି
ପ୍ରେମର ଠାକୁର କାଳିଆ କାହ୍ନା ରେ... ପ୍ରେମ ରଙ୍ଗ ଦିଅ ବୋଳି
ଶାନ୍ତି, ମୈତ୍ରୀ ର ମଧୁବନ ହେଉ... ଖେଳିବା ଆସରେ ହୋଲି ।

# ବୋହୂ ବିଦା...ନିରିମାଖୀ କାନ୍ଦ



ବିନୟ ମୋହନ ଦାସ

ଆଖିରେ ଲେଞ୍ଜେରା, ନାକରେ ସିଂଘାଣୀ, ପାଟିରେ ଖଙ୍କାର ଭରା ଲୋ,

ମୁଣ୍ଡରେ ଦିଅ କୁଙ୍କୁମ ଟୋପା, ମୁହଁ ଦିଶୁଥିବା ତୋରା ଲୋ... ।୧।

ଆଲୋ, ବେଗି ବେଗି ସଜ୍ଜ ସାର, ଆମ ଝିଅ ଯିବ ଶାଶୁ ଘର ଲୋ,

ସାତବର୍ଷ ହେଲା ଗାଧୋଇ ନାହିଁ ସେ, ଅତର ବରଷା କର ଲୋ... ।୨।

ତୁମେ ଗୁଡ଼ା ସବୁ ଛୋଟବେଳୁଁ ସାଙ୍ଗ, ମୁଣ୍ଡ କୁଣ୍ଡାଏନି କେବେ ଲୋ,

ବଡ଼ ପାନିଆରେ ମୁଣ୍ଡ କୁଣ୍ଡାଅ ଲୋ, କିରୋସିନି ବୋଲି ଦିଅ ଲୋ... ।୩।

କେତେ ବଇଦଙ୍କୁ ଦେଖେଇ ସାରିଛି, କେବେ ଛାଡ଼େ ନାହିଁ ଥଣ୍ଡା ଲୋ

ସାପ ଠୁଁ କଇଁଛ, କୁମ୍ଭୀରଠୁଁ ପକ୍ଷୀ, ଖାଇଛି ସମସ୍ତ ଅଣ୍ଡା ଲୋ... ।୪।

ଶାଶୁଘରେ ଝିଅ କେମିତି ଚଳିବ, ନିଜେ କିଛି କରେ ନାହିଁ ଲୋ

ଜ୍ୱାଇଁ ପୁଅ ଯଦି ମାଇଚିଆ ଥିବେ, ସବୁ କିଛି କରି ନେବେ ଲୋ... ।୫।

ଯେଉଁଠି ଶୋଇଲେ ଚିନ୍ତା ନାହିଁ ମୋର, ଗନ୍ଧରେ ପଳାନ୍ତି ସର୍ବେ ଲୋ

ଅଧିକ ସମୟ ରଖି ନାହିଁ ଲାଭ, ସଅଳ ସଅଳ (ସବୁ) ସାର ଲୋ... ।୬।

ଜୁଆଇଁ ପୁଅର ଅଧିକ ଖର୍ଚ୍ଚଲୋ, ଘଡ଼ିକେ ସାରେ ବୋତଲ ଲୋ

ବୋପାର ସମ୍ପତ୍ତି ଥିଲା ବୋଲି ସିନା, ଝିଅକୁ ପସନ୍ଦ କଲା ଲୋ... ।୭।

ଆଲୋ ବେଗି ବେଗି ସଜ୍ଜ ସାର ଲୋ, ଝିଅ ଯିବ ଶାଶୁ ଘର ଲୋ...

# ଜଣେ ପୁରସ୍କୃତ ଲେଖକଙ୍କ ସହ କଥାବାର୍ତ୍ତା



ଡ଼ଃ କୁଳାଙ୍ଗାର

କିଛି ବହି ଲେଖକ ନିଜ ପାଇଁ ଲେଖେ, କିଛି ଚିହ୍ନା ଜଣା ବନ୍ଧୁବାନ୍ଧବଙ୍କ ପାଇଁ, କିଛି ଲାଇବ୍ରେରୀ ପାଇଁ ଆଉ କ୍ୱଚିତ୍ ବହି ପାଠକଙ୍କ ପାଇଁ ଲେଖାଯାଏ । ଏ ସବୁକୁ ଛାଡ଼ିଦେଲେ କିଛି ବହି ଏଥିମଧ୍ୟରୁ କାହାପାଇଁ ଲେଖା ନ ହୋଇ କେବଳ ପୁରସ୍କାର ପାଇଁ ଲେଖାଯାଏ । ପୁରସ୍କାର ପାଇଁ ଲିଖିତ ବହିଟି ଉଚ୍ଚକୋଟିର ଓ ବହୁଲକ୍ଷ୍ୟଯୁକ୍ତ ହେବା ଜରୁରୀ । ଅର୍ଥାତ୍ କେନ୍ଦ୍ର ପୁରସ୍କାର ପାଇଁ ଉଚ୍ଚସ୍ତରରେ କୋଟି ଦରରେ ଦିଆନିଆ ଏବଂ ରାଜ୍ୟସ୍ତରରେ ବହୁ ଜୁରୀଙ୍କୁ ଲକ୍ଷେ ଭିତରେ ପ୍ରସାଦ ଚଢ଼େଇବାକୁ ହେବ । ଆଉ ବହି ଥରେ ପୁରସ୍କୃତ ହୋଇଗଲାପରେ ଏହା ଆପେ ଆମେ ପାଠକ ଓ ଲାଇବ୍ରେରୀର ହୋଇଯିବ । ପୁରସ୍କୃତ ଲେଖକମାନେ ହେଲେ ନିର୍ବାଚିତ ନେତାଙ୍କ ପରି ପୂର୍ବରୁ ଖର୍ଚ୍ଚକାଟ କରି ପରେ ପରେ କ୍ଷମତା ଉପଭୋଗ କରିବା କଥା । ଗୁମର କଥା ସେମିତି ଜଣେ ପୁରସ୍କୃତ ଲେଖକ ଏବେ ଆମ ନିକଟରେ ଉପସ୍ଥିତ ଅଛନ୍ତି । ଆସନ୍ତୁ ତାଙ୍କ ସାଥୀରେ କଥାହେବା ।

ପ୍ର - ପୁରସ୍କାର ପାଇଁ ଅଭିନନ୍ଦନ । ଆପଣ ଜଣେ ପୁରସ୍କୃତ ଲେଖକ ଭାବରେ କିପରି ଅନୁଭବ କରୁଛନ୍ତି ?

ଲେଖକ - ଧୀରେ କୁହନ୍ତୁ ଆଜ୍ଞା । ନହେଲେ ଶୁଣିଲା ଲୋକେ ମୋତେ ଚାହିଁବେ ଆଉ କହିବେ ଓଃ... ତେଲିଆ... ଟାଉଟର ହେଇଥିବ... ଧରାଧରି କରି ପୁରସ୍କାର ଗୋଟଉଚି ମାନେ ପକ୍କା ରାଜନୀତିଆଟେ... ।

ପ୍ର - ଆପଣ କହୁଥିଲେ ଯେ ଏଇ ପୁରସ୍କାର ଆପଣଙ୍କୁ ବହୁ ପୂର୍ବରୁ ମିଳିବା କଥା ?

ଲେଖକ - ପୁରସ୍କାର ପାଇବା ହେଲା କନ୍ୟାପାଇଁ ସୁଯୋଗ୍ୟ ବରପାତ୍ରଟିଏ ମିଳିବା ପରି କଥା । ଯୌତୁକ ଅଲବତ୍ ଦେବେ, ହେଲେ ଯୋଗ ଥିଲେ ହିଁ ଜୁଟିବ ।

ପ୍ର - ପୁରସ୍କୃତ କୃତିଟି ସମ୍ପର୍କରେ ଆପଣ କ'ଣ କହିବେ ? ଏହା ପାଠକଙ୍କୁ କିପରି ତୃପ୍ତିଦେବ ?

ଲେଖକ - ପ୍ରକୃତରେ ଚୋରଘରର ଲୋକେ ଚୋରୀ ଖାଦ୍ୟ ଖାଇ ଖାଇ ଘର ଖାଦ୍ୟକୁ ବିମୁଖ ହେଲାପରି ଏବର ପାଠକେ ଚୋରୀ ସାହିତ୍ୟ ପଢ଼ି ପଢ଼ି ଘରୋଇ ସାହିତ୍ୟ ପ୍ରତି ଆଦୌ ଆଗ୍ରହୀ ନୁହଁନ୍ତି । ତେଣୁ ଏ ବହିଟି ଲେଖିଲା ବେଳେ ମୁଁ ସେ ବିଷୟ ପ୍ରତି ଧ୍ୟାନ ଦେଇଛି ।

ପ୍ର - ତା'ମାନେ ଏ ବହିଟି ଆପଣ ଅନ୍ୟଭାଷାରୁ ଚୋରେଇ ଲେଖିଛନ୍ତି ?

ଲେଖକ - ଉହୁଁ... ପୂର୍ବରୁ ପୁରସ୍କୃତ ବହୁ ପୁସ୍ତକ ପରି ଏଥିରେ ମଧ୍ୟ ଏକ ଇଂରାଜୀ ବହିର ଛାପ ପଡ଼ିଯାଇଛି ।

ପ୍ର - ଶୁଣାଯାଉଛି ଆପଣ ଓଡ଼ିଆ ସାହିତ୍ୟ ଜଗତରେ ଏ ପୁରସ୍କାର ପାଇବା ପୂର୍ବରୁ ଏତେ ପରିଚିତ ନଥିଲେ ?

ଲେଖକ - ପରିଚିତ ହେଲେ ହିଁ ତ ଅଡୁଆ । କାରଣ ଜୁରୀମାନେ ଜଣେ ଜଣେ ମାର୍କାମରା ଲେଖକ ସେମାନେ ଆଉ ଗୋଟେ ବହୁ ପରିଚିତ ଲେଖକକୁ ସହନ୍ତେ ବା କିପରି ?

ପ୍ର - ଏ ପୁରସ୍କାର ହାସଲ ପରେ ପରବର୍ତ୍ତୀ ଲକ୍ଷ୍ୟ କ'ଣ ରଖିଛନ୍ତି ?

ଲେଖକ - କେମିତି କେମିତି କୋର୍ଟ କଚେରୀରେ ନ ଫସିଲେ ରକ୍ଷା... ସେଇ ଦିନ ଗଣୁଛି ।

ପ୍ର - ଆପଣଙ୍କ ପୁରସ୍କାର ହାସଲରେ ପରିବାରର ପ୍ରତିକ୍ରିୟା କ'ଣ ?

ଲେଖକ - ପତ୍ନୀ ପିଲାଏ ସମସ୍ତେ ଗୋଟେ ହୋଇ କହୁଛନ୍ତି - ଏବେ ତ ରହିଯାଅ, ଯେତେ ଟଙ୍କା ଗଲାଣି, ରାଜଧାନୀରେ ଭଲ ପ୍ଲଟ୍ ଖଣ୍ଡେ ହେଇ ଯାଆନ୍ତି ନାଇଁ ?

# ଫୁଲ ବଉଳବେଣୀ



ହାସ୍ୟକବି ସୁଦର୍ଶନ

କୁଆଁର ପୁନେଇ ଜହ୍ନ ଗୋ ଫୁଲ ବଉଳବେଣୀ
ନାରୀ ନେତ୍ରୀ ଆଜି ଫସେଇ ଫସେଇ କିଣିନେଲେ ଆମ ମନ ଗୋ ଫୁଲ ବଉଳବେଣୀ ।
ଗଧର ମୁଣ୍ଡରେ ଶିଙ୍ଗ ଗୋ ଫୁଲ ବଉଳବେଣୀ
ତାଙ୍କ କଥାରେ ତ ଭରିଅଛି ନିଶା ଯେମିତି ଖାଇଲେ ଭାଙ୍ଗ ଗୋ ଫୁଲ ବଉଳବେଣୀ ।
ସମ୍ବଲପୁରର ନନୀ ଗୋ ଫୁଲ ବଉଳବେଣୀ
ପିଲାଟି ଦିନରୁ ବଡ଼ ଯେ ହୋଇଛି ଧରି ମା' ପଣତ କାନି ଗୋ ଫୁଲ ବଉଳବେଣୀ ।
ଦୋଳି କରେ କଟମଟ ଗୋ ଫୁଲ ବଉଳବେଣୀ
ଶାଶୁ ନଣନ୍ଦଯେ ଆମ ଚିରଶତ୍ରୁ ସମ୍ପର୍କରେ କଲୁ ଫାଟ ଗୋ ଫୁଲ ବଉଳବେଣୀ ।
ଗହିରୀ ବିଲର ହୁଡ଼ା ଗୋ ଫୁଲ ବଉଳବେଣୀ
ଆମେ ଆସିଗଲୁ ଆମେରିକା ଦେଶେ ଆଉ କଣ ମଫ ଚୁଡ଼ା ଗୋ ଫୁଲ ବଉଳବେଣୀ ।
ଭୁବନେଶ୍ୱରର ହାଟ ଗୋ ଫୁଲ ବଉଳବେଣୀ
ହାଟ ବାଟ ଯେତେ ସବୁ ତ ଭୁଲିଲୁ ମଲ୍‌ରେ କରୁଛୁ ନାଟ ଗୋ ଫୁଲ ବଉଳବେଣୀ ।
ନାରୀ ନେତ୍ରୀ ଦେଲେ କହି ଗୋ ଫୁଲ ବଉଳବେଣୀ
ଯେଉଁ ଟୋକା ଦଳ ଆମକୁ ମାନିବେ ସେମାନେ ଆମର ଭାଇ ଗୋ ଫୁଲ ବଉଳବେଣୀ ।
ପାହାନ୍ତି ପହର ଗାଡ଼ି ଗୋ ଫୁଲ ବଉଳବେଣୀ
ନାରୀ ଲିବରେଟ୍ ପତାକା ପୋତିଲୁ ଓଡ଼ିଆ ସଂସ୍କୃତି ଛାଡ଼ି ଗୋ ଫୁଲ ବଉଳବେଣୀ ।
ରଥ ଯାଏ ଗଡ଼ି ଗଡ଼ି ଗୋ ଫୁଲ ବଉଳବେଣୀ
ସାବିତ୍ରୀ ଓଷା ଓ ସୁଦଶା ବ୍ରତକୁ ଓଡ଼ିଶାରେ ଦେଲୁ ଛାଡ଼ି ଗୋ ଫୁଲ ବଉଳବେଣୀ ।
ବେଙ୍ଗ କହେ ଆଖିମାରି ଗୋ ଫୁଲ ବଉଳବେଣୀ
ଓଡ଼ିଆ ସଂସ୍କୃତି ପୋଡ଼ି ଖାଇଲୁଣି ଆମେ ଆମେରିକା ନାରୀ ଗୋ ଫୁଲ ବଉଳବେଣୀ ।
ବାରିଆଡ଼େ ନନ୍ଦ କୂଅ ଗୋ ଫୁଲ ବଉଳବେଣୀ
ଲଜ୍ଜା ସରମକୁ ଛାଡ଼ି ସେ ଆସିଛି ଉପରକୁ ଆଜି ମୁହଁ ଗୋ ଫୁଲ ବଉଳବେଣୀ ।
ବାସି ମାଛ ଭଣ ଭଣ ଗୋ ଫୁଲ ବଉଳବେଣୀ

ଇଜ୍ଜତ ମହତ ଦାଣ୍ଡରେ ଲୁଟେଇ ଚଣ୍ଡୀ କରେ ଅଣୁରଣ ଗୋ ଫୁଲ ବଉଳବେଣୀ ।

ମନ ଯାଉଥିଲା ମରି ଗୋ ଫୁଲ ବଉଳବେଣୀ

ଫ୍ଲାଇଟିରେ ଆସି ନାରୀ ନେତ୍ରୀ ଆମ କଲେ ପରୁଆନା ଜାରୀ ଗୋ ଫୁଲ ବଉଳବେଣୀ ।

ମଥା ହୋଇଗଲା ଘୁରି ଗୋ ଫୁଲ ବଉଳବେଣୀ

ଲେଡ଼ିଜ୍ କରିବେ ନାଇଟ୍ ଆଉଟୁ ହୁଇସ୍କି ବୋତଲ ଧରି ଗୋ ଫୁଲ ବଉଳବେଣୀ ।

ଏ ତ କଳିକାଳ ରୀତି ଗୋ ଫୁଲ ବଉଳବେଣୀ

ସ୍ୱାମୀ ପରିବାର ଗାଧୋଇ ଯାଆନ୍ତୁ କରିବା କୁକୁର ପ୍ରୀତି ଗୋ ଫୁଲ ବଉଳବେଣୀ ।

ହାକିମ ଘରର ଝିଅ ଗୋ ଫୁଲ ବଉଳବେଣୀ

କଥା କଥାକରେ ଡ଼ାଇଲଗ୍ ଝାଡ଼େ ଡ଼ାଇଭର୍ସ୍ କରି ଦେବ ଗୋ ଫୁଲ ବଉଳବେଣୀ ।

ଦେହ ଲାଗୁନାହିଁ ତାଜା ଗୋ ଫୁଲ ବଉଳବେଣୀ

କିଚେନ୍‌ରେ ଆଉ ମୁଡ୍ ନାହିଁ ଆମ ଡ଼ିନରରେ ଆଣ ପିଜ୍ଜା ଗୋ ଫୁଲ ବଉଳବେଣୀ ।

କୁକୁର ଲାଞ୍ଜ ତ ବଙ୍କା ଗୋ ଫୁଲ ବଉଳବେଣୀ

ମରଦ ଜାତିଙ୍କ ଭାଳେଣି ପଡ଼ିଲା ବଢ଼ିଗଲା ଆଜି ଶଙ୍କା ଗୋ ଫୁଲ ବଉଳବେଣୀ ।

ଖିରରେ ପଡ଼ିଲା ମାଛି ଗୋ ଫୁଲ ବଉଳବେଣୀ

ମଣିପି ବସିଚି ମୁଣ୍ଡେ ହାତ ଦେଇ ବୁଦ୍ଧି ଦିଶୁନାହିଁ କିଛି ଗୋ ଫୁଲ ବଉଳବେଣୀ ।

ମହାନଦୀ ପାଣି ନୀଳ ଗୋ ଫୁଲ ବଉଳବେଣୀ

ଏମିତି ତିରିଲା ଜୀବନରେ ଥିଲା ଭାଗ୍ୟର ଇଏ କି ଖେଳ ଗୋ ଫୁଲ ବଉଳବେଣୀ ।

ଏ ଜୀବନ ନିଆଁ ରଢ଼ ଗୋ ଫୁଲ ବଉଳବେଣୀ

କରିବାକୁ ଆଉ ବାକି କିଛି ନାହିଁ ବୋହି ଗଲା ନେଡ଼ିଗୁଡ଼ ଗୋ ଫୁଲ ବଉଳବେଣୀ ।

ଖୋକା ଭାଇ ଗଲେ ଗାଇ ଗୋ ଫୁଲ ବଉଳବେଣୀ

ଏମିତି ଝିଅକୁ ବାହାହୋଇ ମୁଁ ଯେ କାନ୍ଦୁଥାଇ କଇଁ କଇଁ ଗୋ ଫୁଲ ବଉଳବେଣୀ ।

କବି କରେ ନିବେଦନ ଗୋ ଫୁଲ ବଉଳବେଣୀ

ଓଡ଼ିଆ ସଂସ୍କୃତି ମାଟିରେ ନ ମିଶା 'ଜଗା' ଆମ ଅଭିମାନ ଗୋ ଫୁଲ ବଉଳବେଣୀ ।

କହେ କବି ସୁଦର୍ଶନ ଗୋ ଫୁଲ ବଉଳବେଣୀ

ଜଗନ୍ନାଥ ଆମ ଅସଲ ସଂସ୍କୃତି ପାଦପଦ୍ମେ ତାଙ୍କ ମନ ଗୋ ଫୁଲ ବଉଳବେଣୀ ।

# ପ୍ରତିନିଧି



ସତ୍ୟଜୀତ ପଟ୍ଟନାୟକ

ଏ ଦେଶର ପ୍ରତିନିଧି ତୁମେ

ଦୁଃଶାସନ ସମାଜର କୁରୁସଭା ତଳେ

ଆମେ ସବୁ ସାଜିଛୁ ଦ୍ରୌପଦୀ

ସମାଜର ଯେତେ ଯେତେ ଅସହାୟ ଦରିଦ୍ର ନିର୍ଦ୍ଧନ

ବସ୍ତ୍ରନାମେ ଦେଉଆମେ ଏ ଦେହର ରକ୍ତମାଂସ ପ୍ରତି ମୁହୂର୍ତ୍ତରେ ।

ତମର ସେ ଦୃଢ଼ ହାତେ କ୍ଷମତା ନଟେଇ

ଆଇନ ସୂତାର ଦେହେ କଳାଟଙ୍କା ମାଞ୍ଜା

ଆମେ ଏଠି ଉଡୁଥାଉ ଗୁଡ଼ିରୂପେ ହୋଇ ଦିଗହଜା

ଖୋଲିବାର ଭୟନାହିଁ, ପ୍ରତିନିଧି

ତମର ସେ ସୁତା ମୁଣ୍ଡେ ଆମ ବେକେ ଭଲ ଭାବେ ବନ୍ଧା ।

ଆମ ମା ଭଉଣୀ କାଳେ ତୁମ ଆଗେ ରମ୍ଭା ଓ ଉର୍ବଶୀ

ଡ଼ାକବଙ୍ଗଳାର ସ୍ୱର୍ଗେ ନିତି ଦେଖ ସ୍ୱପ୍ନ

ତାଙ୍କ ହାତୁ ନେବାପାଇଁ ସୁରାପାତ୍ର

ଶୁଣିବାକୁ ତାଙ୍କ ପାଦ ନୁପୂର ଝଙ୍କାର ପୁଣି

ଦେଖିବାକୁ ତାଙ୍କ ଦେହ ପ୍ରୀତିର ଓଡ଼ିଶୀ ।

ସହରୁ ସହର ବୁଲି ଦେଶପ୍ରେମ ଉପଦେଶ ଦିଅ

ନାଲି ବୋତଲର ଶବ୍ଦେ ରାତିହେଲେ

ଦେଶପ୍ରେମ ବଦଳେ ତ ଆପଣା ପ୍ରେମରେ

ବାରମାସୀ ପକ୍ଷୀପରି ବେଳଦେଖି ରଙ୍ଗ ବଦଳାଅ

ତମ ତୀକଷ୍ଣ ଚାହାଣୀରେ ସବୁକିଛି ଜଳିଯାଏ

ଅମୃତ ପାଲଟେ ବିଷ ତମ ନିଃଶ୍ୱାସରେ ।

ଏଠି ଯେତେ କୋଠାଘର ଅବା ଚାଳଘର
ସବୁ ଗଳି ବିଗଳିରେ ମାଡ଼ିଆସେ ତାତିର ଜୁଆର
ପ୍ରତିଟି ବଖରା ଏଠି ଭରିଅଛି ଅବଶୋଷ ଯନ୍ତ୍ରଣା ଓ
ଅନାହାର ଦୁଃଖେ
କେବେ କି ଭାବିଛ ଥରେ ପ୍ରତିନିଧି
ଅନ୍ଧାରର ମୁଖାପିନ୍ଧି ସୂର୍ଯ୍ୟ ଆସେ
କେମିତି ଏ ଗରୀବର ବୁକେ ?

ଅହରହ ଶୁଣାଉଛ ଗାନ୍ଧୀ ଆଉ ସ୍ୱରାଜ ବାରତା
ଅହିଂସା ଓ ଧର୍ମ ନାମେ ଖେଳି ହିଂସା ଖେଳ
ବୋଲାଉଛ ଆପେ ଆପେ ଦେଶର କରତା
ନୀଳକଣ୍ଠ ସାଜିପାର ଅନାୟାସେ ପିଦେଇ ଅସୂୟାର ନୀଳ
ତମେ କି ଜାଣନା
ଖଦଡ଼ ପୋଷାକ ତଳୁ ସ୍ୱଷ୍ଟ ଦିଶେ
ତମର ସେ ଭାନୁମତୀ ରହସ୍ୟର ଖେଳ ।

ନିର୍ବାଚନ ଇସ୍ତାହାର ଯେତେ
ସବୁଖାଲି ମିଛା ମିଛା ଶବ୍ଦର ଚମକ
ତମ ରାଜନୀତି ଖେଳେ
ଏ ଦେଶର ଜନତା ଯେ ଛାତିତଳୁ ଇଡିଦିଏ ରକ୍ତ
ତମେ କିନ୍ତୁ ନିଃସଙ୍କୋଚେ ଫୁଟାଅତ ବୋମା
ଫୁଲଟିଏ ପାରନା ଫୁଟାଇ
ତମକୁ ଚିହ୍ନିଲୁ ଖୁବ୍ ପ୍ରତିନିଧି
ଚିହ୍ନିବାକୁ ବାକି ଆଉ କିଛି ନାହିଁ ॥

# ଗାଉଁଲି ସକାଳ



ସରୋଜ ମିଶ୍ର

ପୁରୁବ ସୂରୁଜ ସତେକି ମଥାରେ ନାଇଛି ସିନ୍ଦୁର ଟୋପା
କଅଁଳିଆ ଖରା ଦେଖି ଧାଇଁଲେଣି ମୃଗୁଣୀ ଦଫାକୁ ଦଫା
କିଚିରି ମିଚିରି ବାରମିଶା ପକ୍ଷୀସ୍ୱର ତାଙ୍କ ନାନା ଢ଼ଙ୍ଗେ
କଳା-ହଳଦିଆ-ନାଲିଆ-ଶାଗୁଆ ଭିନ୍ନ ଜାତି ଭିନ୍ନ ରଙ୍ଗେ
କି ସୁନ୍ଦର ଦିଶେ ଆହା...
ଆକାଶେ ବଗୁଲି ଧାଡ଼ି ଧାଡ଼ି ହୋଇ ଉଷା ଲାଗେ ମନଛୁଆଁ... ୦

ମଲାଜହ୍ନ ସାଥେ ମଲା ବାଦଲ ବି ଏ ଯାଏଁ ଆଖି ଖୋଲିନି
କୁକୁଟ କୁହାଟ କାକ କା' କା' କେବେଠୁ ରାବି ଗଲେନି
ଜନ କୋଳାହଳ ବଢ଼ିନି ଏ ଯାଏଁ ହସିନି ପୋଖରୀ କୂଳ
ନବ ବଧୂ ଯେତେ ଲୁଚି ବାହୁଡ଼ନ୍ତି ଲୁଚାଇ ଚୋରା ନଜର
ଟୋପା ଟୋପା ଜଳ ବୋହି
ପାଦ ଅଳତାରେ ବାଲି ଚଢ଼ିଲାଣି ସତେକି ଉଛୁଳା ନଈ... ୧

ଫିଟାଇ ଦେଲାଣି ହାଲିଆ ହଳ ଟି ହୋଇଲା ଶାନ୍ତ ସକାଳ
ସୂର୍ଯ୍ୟଦେବ ତେଜ ଦେଖାଇ ନାହାନ୍ତି ପେଟରେ ପେଟେ ପଖାଳ
କୋଳି ପିଆଜକୁ ଲୁଣ ଲଙ୍କାଦେଇ ଆମ୍ବିଳି ଅମୃତ ପାଣି
ସକାଳୁ ସକାଳୁ ମନ ଥଣ୍ଡା ଥିଲେ ସମୟ ନ ହୁଏ ଗଣି
ଫିଟଇ ଖୁସିର ସ୍ୱର
ଗେଣ୍ଡାଳିଆ ପର ଝାଡ଼ି ତ ଦେଲେଣି - ରାଜାଝିଅ ବୁଢ଼ାବର... ୨

ଘୁମ୍ ଘୁମ୍ ହୋଇ ପାରା ଖୁଣ୍ଟିଲେଣି ଦେଉଳ ବେଢ଼ାରେ ଧାନ
ସିଏବି ଲଗାଇ ସବୁଠାରୁ ଖୁସି ଫୁଲାଇ ଗ୍ରୀବା ଓ କାନ
ନାଲି ପାଦ ନାଲି ଚଞ୍ଚୁ କୁ ଦେଖାଇ ଗୋଟିଏ ଜାଗାରେ ବୁଲେ

ରଘୁଆ ମାଳିଟି କେବେଠୁ ଗଲାଣି ଥୋଇଦେଇ ନାନା ଫୁଲେ
ମନ୍ଦିରରେ ଘଣ୍ଟି ସ୍ୱର
ଫଡ଼ ଫଡ଼ ହୋଇ ଉଡ଼ିଗଲେ ପାରା ଖୋଲିଲା ବୋଧେ ପହଡ଼... ୩

କୁରୁପ ମା' ଟି ସକାଳୁ ସକାଳୁ ବସି ଯାଏ ପିଠି କରି
ଫଟା ମାଟି କାନ୍ଥ ଝାଟି ମାଟି ପରି ଦିଶଇ ପଞ୍ଜରା ଚାରି
ଗୋବର ଚକୁଳି ଗୋଟି ଗୋଟି କରି ଶୁଖାଏ ରେଗେଡ଼ା କାନ୍ଥେ
ଲଙ୍ଗଳା ନାତିକୁ ଗାଳି ଦେଉଥାଏ ହଲାଇ ତା ନାକ ନୋଥେ
ମୁଖ ଟି ଭାରି ଖସଡ଼ା
ଅନ୍ତର ମହମ ଠାରୁ ଯେ ନରମ କେତେ ଦେଖ ମୁହଁ ମୋଡ଼ା ... ୪

ଗାଁ ଗାଇ ଗୋଠ ଫିଟାଇବା ପାଇଁ ଡ଼ାକେ ଗାଇଆଳ ମୁଣ୍ଡେ
ଗୋଟି ଗୋଟି ହୋଇ ଫିଟିଲେଣି ଗାଇ ହଲାଇ ପାକୁଳି ତୁଣ୍ଡେ
ଉଡ଼ିଲାଣି ଧୂଳୁ ନାକ ଯାଏଁ ଭାରି ବିନା କାରଣରେ ମାଡ଼
ହଇରେ ଲଖିଆ ଖାଇନୁକି ଘରେ ଫିଟୁନି କି ତୋର ଥୋଡ଼ ?
ରାଗିଲେ ଅନନ୍ତ ଜେଜେ
ଆଦିଅନ୍ତ ନାହିଁ ତାଙ୍କ ଅନ୍ତରର ପର ଲାଗି ଆଖି ଭିଜେ ... ୫

ସବୁ ଲୁଚିଲାଣି ଗ୍ରାମ୍ୟ ଶୀରି ଯେତେ ସମୟକୁ ଦେଇ ତାଳ
ଶୁଖି ତ ଗଲାଣି କାଇଁଚ ଗଛଟି ନ ଦିଶଇ ତାର ଫଳ
ଆଷାଢୁଆ ବେତ ଲେଖନ କୋଳିଟି ହଜିଲାଣି ଯୁଗ ମତେ
ଅରଣ୍ୟ ହେଲାଣି ଶ୍ରୀ ହୀନ କେବେଠୁ ପଡ଼ି ଧୋକାବାଜ୍ ହାତେ
ପ୍ରକୃତି ଝରାଏ ଲୁହ
ପଶୁଙ୍କ ବିକଳ ଯାହାକୁ ନ ଦିଶେ ସେ କିବା ବୁଝିବେ କୋହ ? ... ୬

# କେଉଟ ଝିଅର ପ୍ରେମ



ବିଭୂତି ରଥ

କେଉଟ ଝିଅ ପଡ଼ିଗଲା ପ୍ରେମରେ

ବ୍ରାହ୍ମଣ ପୁଅ ଭଳିଗଲା ତା ରୂପରେ

ସେଦିନ ଥାଏ ଭାଲେଣ୍ଟାଇନ୍ ଡେ

ଉପହାର କଣ ମିଳିବ

ବ୍ରାହ୍ମଣ ପୁଅ ବସି ଭାବୁଥାଏ

ଆସିଲା କେଉଟ ଝିଅ ଶେଷରେ

ଉପହାର ଆଣିଥିଲା ଲାଲ୍ ରଙ୍ଗର ବ୍ୟାଗ୍‌ରେ

ହସିଦେଇ ପଦେ ଚୁମାଟିଏ ଦେଲା

ଉପହାର ବ୍ୟାଗ୍ କୁ ବଢ଼େଇଦେଲା

ପ୍ରେମିକ ଖୋଲି ବ୍ୟାଗ୍‌କୁ ଦେଖିଲା

ସୁନ୍ଦର ପ୍ୟାକ୍ ଭିତରେ

ଆହ୍ରା ମାଛଟିଏ ଥିଲା ... ।

# ଶେଷ ଅନୁରୋଧ



ଅଜିତ କୁମାର ତ୍ରିପାଠୀ (କୁଲ୍ ଅଜିତ୍)

ହଠାତ୍ ମୋତେ ଅନୁଭବ ହେଲା
ସେ ଆସି ମୋ ପାଖରେ ବସିଛି
ମୁଣ୍ଡକୁ ଆଉଁସି ଦେଉଚି
ହାତ ଧରି କ୍ଷମା ମାଗୁଛି
ପୁରୁଣା ସ୍ମୃତିର ପାଖୁଡ଼ା ଗୁଡ଼ିକୁ
ମୋ ମନର କୋଣ ଅନୁକୋଣରେ
ସଜାଇବାକୁ ଚେଷ୍ଟା କରୁଛି
କେଇ ଟୋପା ଅଶ୍ରୁ ଗଡ଼େଇ
ତା ଭୁଲ ପାଇଁ ସେ ପ୍ରାୟଶ୍ଚିତ କରୁଛି
ହାତ ଧରି ବାରମ୍ବାର ଅନୁରୋଧ କରୁଛି
ଚାଲ ଫେରିଯିବା ଆମେ ଆମର ସେହି ଅତୀତକୁ
ସେ ଏବେ ଅନୁତପ୍ତ....
କିନ୍ତୁ...
ଏବେ ମୁଁ ତାହା ପାଇଁ ମରିଚିକା
ପ୍ରତିଶ୍ରୁତିହୀନ ମଣିଷ
ତାହା ପାଇଁ ସ୍ୱପ୍ନ...
ସେ ଏବେ ମୋ ପାଇଁ ଅତୀତ
ମୋ 'ବର୍ତ୍ତମାନ' ମୋ ପାଇଁ ଅପରିହାର୍ଯ୍ୟ

ନିଜକୁ ସମ୍ଭାଳିବାକୁ ଚେଷ୍ଟା କରି
ପ୍ରଥମ ଓ ଶେଷଥର ପାଇଁ
ଅନୁରୋଧ କଲି ତା'କୁ
ମୁଁ ପାରିବିନି ତୁମ ହାତ ଧରି....
ମୁଁ ପାରିବିନି ଅତୀତକୁ ଆଲିଙ୍ଗନ କରି,
ଫେରିଯାଅ ତୁମେ....

# ତୁମକୁ ଅନେକ ଖୋଜା ଚାଲିଛି



ପ୍ରତୀକ୍ଷା ଜେନା

ତୁମକୁ ଅନେକ ଖୋଜା ଚାଲିଛି
ବଣ ପାହାଡ଼ ଗଛ ଲତା
ଆଉ ମହୁଲ ଫୁଲରେ,
ପୁଣି ଭୋକରେ ପଡ଼ିଯାଉଥିବା ପେଟ ଓ
କୁଆଁରୀ ଝିଅର ଖିଆଲି ମନ ରେ’
ସମସ୍ତେ ଏକା ସାଥେ ବାହାରିଛନ୍ତି
ତୁମରି ଅନ୍ୱେଷଣେ.....
ତୁମେ କାଳେ ହଜିଯାଇଛ
ରାଗରେ, ଅଭିମାନରେ
ଲୁଚି ଯାଇଛ ସମୟ ସନ୍ଧିରେ’
ସବୁଠି ତୁମରି ଚର୍ଚ୍ଚା,
ତୁମରି ଅପେକ୍ଷା....

ତୁମେ ଥରେ ଅଳସ ଭଙ୍ଗିରେ
ଝୁମିଗଲେ, ଚୁମିଗଲେ
କାଳେ ବଦଳିଯିବ
ସବୁ ଦୃଶ୍ୟ, ସବୁ ଚିତ୍ରପଟ
ଧୋଇଯିବ ଦୁଃଖରେ ଆଉଟୁ ପାଉଟୁ
ହେଉଥିବା ଯନ୍ତ୍ରଣାଶିକ୍ତ
ଆହତ ମନ

- - - - - - - - - - - - - - - - - - -

ମୁଁ କିନ୍ତୁ ସବୁ ଝରକା, କବାଟ କିଳି

ଗୁମୁରୁଛି ଅନ୍ଧାରରେ,

ଡ଼ରୁଛି ଆଲୋକିତ ହେଲେ,

କାଲେ,

ତୁମେ ଚିହ୍ନିଦେବ ଅତର୍କିତ

ଭାବେ ଆସି, ଚମକେଇ ଦେବା

ମନେ ପକେଇଦେବ ସବୁ ପଛକଥା

ସବୁ ମୃତ ପୃଷ୍ଠା

ଯାହା ସବୁ ମୋଡ଼ିମାଡ଼ି

କେବେଠୁ ପକେଇଦେଇଛି ଡ଼ଷ୍ଟବିନ ରେ

କେବେଠୁ ଆଉ ମୁଁ ଅନୁଭବୁନି

ତୁମକୁ

ମନା କରିଦେଇଛି ମହୁଲ ଫୁଲ କୁ

ଆଉ ଆନମନା ନ କରିବାକୁ,

ତୁମେ ଆସୁଛ ଯଦି ଆସ

ମନା ନାହିଁ ତୁମକୁ

ମୁଁ ସିନା ବନ୍ଦିନୀ

ତୁମକୁ ନ ଛୁଇଁବାର

ପଣ କରିଛି,

ବାହାରେ କିନ୍ତୁ ଭାରି ଆଡ଼ମ୍ବର

ଅନେକ ଅପେକ୍ଷା...

ବସନ୍ତ.....

ଆଉ କେତେ ଡ଼େରି

ଆସି ଥରେ ଛୁଇଁ ଯାଅ ଯେତେ ସବୁ

ଆହତ ମନକୁ ॥



# ମୂକ ପଥର

ମୋନାଜ କୁମାର ମୁଦୁଲି

ସେ ଦେଖିଚି ସଭ୍ୟତା

ଆଦିମ ଜଗତର ଆରମ୍ଭ,

ତା ଦେହରେ ନେସି ହୋଇଜାଇଚି

ଜୀବନ ଯାତ୍ରାର ପଦଚିହ୍ନ ବାର୍ତ୍ତା ...

ତଥାପି ସେ ବସିଚି

ଖୁଣ୍ଟ ପରି;

ତା ଉପରେ ସୃଷ୍ଟି ହୋଇଚି

ଆଉ ଲିଭି ବି ଯାଇଛି

କେତେ କେତେ ମହାନ୍ ସଭ୍ୟତା....

ଜାଣି ନଥିଲା ତା ଆରମ୍ଭ କେଉଁଠୁ

ପଚାରିଛି ଅନେକ୍ ଥର ,

ହତବାକ୍ ହୋଇ ଚାହିଁଛି

ଏଇ ଝରଣା ଆଉ ଘନ ଜଙ୍ଗଲକୁ

ପ୍ରତି ବଦଳରେ ମିଳିଛି

ପଥର ପ୍ରହାର, ସେଇ ଆଦି ମାନବର....

ଏବେ ସେ ଚୁପ୍

କାହାକୁ ପଚାରିନି ସେ କେଉଁ ସଭ୍ୟତାର

ତାକୁ କିଏ କାହିଁକି ବା ପଚାରିଥାନ୍ତା

ତୁମେ କେଉଁ ପଥର ?

ଏଇ ମାତ୍ର ଶାଣିତ କରିଚି

ଖଣ୍ଡାର ଧାର..

ଶୁଣିଚି ସେଇ ଢ଼ାଲର କରୁଣ ଚିତ୍କାର .....

ଏବେ କିନ୍ତୁ ସେ ଅଘାତ ନାହିଁ ,

ବନ୍ଧୁକ ମୁନରେ ଚାଲେ ରଣ ଝଂକାର,

କେବଳ ସେ ଶବ୍ଦ ଶୁଣେ

ହଁ; କେବେ କେବେ ଲୋଟିପଡେ

ଯୁବକଟି

ତା କୋଳରେ କରିଉଠେ ଆର୍ତ୍ତଚିତ୍କାର

ସେ କିନ୍ତୁ ନିରବ

ରହିଥିଲା;

ରହିଥିବ;

ତା ଆଗରେ ଗଡ଼ିଛି

କେତେ ମୁଣ୍ଡ କେତେ ସଭ୍ୟତାର ,

କିନ୍ତୁ ସେ ମୂକ ପଥର

ହଁ ମୁକପଥର...

# ଫେରି ଯାଆ ଫଗୁଣ ତୁ ...



ନିବେଦିତା ମିଶ୍ରଗୁରୁ

ହେ ଫଗୁଣ ....

ମୁଁ ଜାଣିଥିଲି

ତୁ ନିଶ୍ଚୟ ଆସିବୁ ବୋଲି ....

ମୁଁ ଜାଣିଥିଲି

ତୁ ନେଇ ଆସିଥିବୁ ତୋ ସାଥେ

ମୁଠା ମୁଠା ଫଗୁ

ବିଞ୍ଛି ଦେବୁ ଚାରି ଆଡ଼େ

ଭରିଦେବୁ ପୃଥିବୀକୁ ଅଜସ୍ର ରଙ୍ଗରେ...

ଆଜିର ଏ ବାସନ୍ତୀ ପ୍ରଭାତରେ

ନୂଆ ନୂଆ ସ୍ୱପ୍ନର ରଙ୍ଗ ବୁଣି

ବିଭୋର୍ କରିଦେବା ପାଇଁ

ଏଇ ମୃତ ମଣିଷ ମାନଙ୍କୁ..

ହେଲେ ଫଗୁଣ ରେ ...

ଏଠି ବା ମୁଲ୍ୟ କାହିଁ

ତୋ ରଙ୍ଗ ବେରଙ୍ଗୀ ଫଗୁ'ର ?

ଏଠି ତ ଅନବରତ ଚାଲିଚି ହୋରୀ ଖେଳ

ତୁ ଆସିବାର ଅନେକ ଆଗରୁ

ରକ୍ତର ସେ ଅସରନ୍ତି ହୋରୀ ଖେଳ

ଚାରି ଆଡେ ଖାଲି ରକ୍ତ ର ପାଦ ଚିହ୍ନ

କେଉଁଠି ବିଞ୍ଚି ଦବୁ କହ

ତୋ ମୁଠା ର ଅଜସ୍ର ରଙ୍ଗକୁ ?

ହେ ଫଗୁଣ ...ଫେରି ଯା ତୁ ...

ଚାଲି ଯା ତୁ ସେଇ ପୃଥିବୀ କୁ

ଯେଉଁଠି ବହିବ ତୋର ଆଗମନେ

ମତାଣିଆ ମଳୟର ବାଆ

ଶୁଭୁ ଥିବ କୋକିଳର କୁହୁ ତାନ

ତନୁ ମନେ ଶିହରଣ ଆଣୁଥିବ

ବଉଳର ଭୁରି ଭୁରି ବାସ ....

ହେ ଫଗୁଣ....ଚାଲି ଯା ତୁ ...

ଚାଲି ଯା ତୁ ସେଇ ପୃଥିବୀ କୁ

ଯେଉଁଠି ନ ଥିବ ଜମା

ରକ୍ତ ର ପାଦ ଚିହ୍ନ

କ୍ଷୁଧା ର ନିଆଁରେ ଜଳୁ ନ ଥିବ

ଯେଉଁଠି କୁମାରୀର ଲାଜ

ଆଭିଜାତ୍ୟର ଚାକଚକ୍ୟ ପଛ ଆଡ଼େ

ନ ଥିବ ଜମାରୁ ସେଠି କ୍ଷମତା ଲଢେଇ...

ହେ ଫଗୁଣ ..ଚାଲି ଯା ତୁ

ସେଇ ପୃଥିବୀ କୁ ......

ବିଞ୍ଚି ଦବୁ ଚାରି ଆଡେ ତୋ ମୁଠାରୁ

ଅସୁମାରୀ ରଙ୍ଗର ଫୁଆର ..

ମଳୟର ବାଆ ସାଥେ ଦୋଳି ଖେଳି

କୋକିଳର କୁହୁ ସାଥେ ଗୀତ ଗାଇ

ଲୋଟି ଯିବୁ ସେ ପୃଥିବୀ ରଙ୍ଗୀନ ଛାତିରେ ...

# ଆମ ରୋଷେଇଘରୁ



ବନ୍ଦନା ପଣ୍ଡା

## ଚିଙ୍ଗୁଡ଼ି ପକୋଡ଼ି

ଆବଶ୍ୟକୀୟ ସାମଗ୍ରୀ : – ୨୫୦ ଗ୍ରାମ ଛୋଟ / ମଧ୍ୟମ ଆକାରର ଚିଙ୍ଗୁଡ଼ି ମାଛ, ୬-୭ ଚାମଚ ବେସନ, ୩ଟି କଞ୍ଚା ଲଙ୍କା, ଗୋଟିଏ ବଡ଼ ପିଆଜ, ୧ ଚାମଚ ଡ଼ାଲଚିନି ଗୁଣ୍ଡ, ୧ ଚାମଚ ଜିରାଗୁଣ୍ଡ, ସୋରିଷ ତେଲ, ଲୁଣ ସ୍ୱାଦାନୁସାରେ

ପ୍ରସ୍ତୁତି ପ୍ରଣାଳୀ : – ପ୍ରତ୍ୟେକ ଚିଙ୍ଗୁଡ଼ିର ମୁଣ୍ଡ ଗୁଡ଼ିକୁ ଅଲଗା କରିଦିଅନ୍ତୁ । ଭଲଭାବରେ ଧୋଇଦେଇ ଗ୍ରାଇଣ୍ଡରରେ ଚିକ୍କଣ କରି କାଟିଦିଅନ୍ତୁ । ସେଥିରେ ଲୁଣ, ବେସନ, ଛୋଟ ଛୋଟ କଟାଯାଇଥିବା ପିଆଜ, କଞ୍ଚାଲଙ୍କା, ଡ଼ାଲଚିନି ଗୁଣ୍ଡ, ଜିରାଗୁଣ୍ଡ ସବୁକୁ ମିଶାଇ ଦିଅନ୍ତୁ । ତା'ପରେ କଢ଼ାଇରେ ତେଲ ଗରମକରି, ସେଥିରେ ଗୋଳା ହୋଇଥିବା ଆଣରୁ ଅଳ୍ପ ଅଳ୍ପ କଢ଼େଇରେ ପକାଇ ବାଦାମୀ ରଙ୍ଗ ହେଲା ପର୍ଯ୍ୟନ୍ତ ଛାଣନ୍ତୁ । ପୋଦିନା ଚଟଣୀ ବା ଲଙ୍କା ଚଟଣୀ ସହ ଗରମ ଗରମ ଖାଇବାକୁ ଦିଅନ୍ତୁ ।

---

## ପୋଟଳ କୁରମା

ଆବଶ୍ୟକୀୟ ସାମଗ୍ରୀ : – ୫୦୦ ଗ୍ରାମ ପୋଟଳ, ୪ଟି ବଡ଼ ଆଳୁ (ସିଝା), ୨୫ ଗ୍ରାମ କଣ୍ଟା ଛଡ଼ା ମାଛ (ନିରାମିଷ ବ୍ୟକ୍ତିଙ୍କ ପାଇଁ ପନୀର ବ୍ୟବହାର କରାଯାଇପାରେ), ୧ ଚାମଚ ଡ଼ାଲଚିନି ଗୁଣ୍ଡ, ୧ ଚାମଚ ଜୀରା ଗୁଣ୍ଡ, ୧ ଚାମଚ ଗୋଟା ଜୀରା, ୧/୨ ଚାମଚ ଚିନି, ୬-୭ ଚାମଚ ତେଲ, ସ୍ୱାଦାନୁସାରେ ଲୁଣ

ପ୍ରସ୍ତୁତି ପ୍ରଣାଳୀ : – ପ୍ରଥମେ ପୋଟଳର ଚୋପା ଛଡ଼ାଇ ଦିଅନ୍ତୁ । ପୋଟଳ ଗୁଡ଼ିକୁ ଛୋଟ ଛୋଟ ଆକାରରେ କାଟି ଦିଅନ୍ତୁ । ତା'ପରେ ପୋଟଳ ଗୁଡ଼ିକର ମୁଣ୍ଡିକୁ କାଟି ଭିତରେ ଥିବା ମଞ୍ଜିକୁ କାଢ଼ି ଦିଅନ୍ତୁ ଏବଂ ଲୁଣ ଗୋଳାଇ ରଖନ୍ତୁ । ପୁର ଦେବାପାଇଁ ସିଝା ଆଳୁର ଚୋପା ଛଡ଼ାଇ ଚକଟି ଦିଅନ୍ତୁ । ଦୁଇ ଚାମଚ ତେଲ ଗରମ କରି ସେଥିରେ ଜୀରା ଫୁଟାନ୍ତୁ । ସେଥିରେ ସିଝା ଆଳୁ ଚକଟା, ମାଛ, ଡ଼ାଲଚିନି, ଜୀରାଗୁଣ୍ଡ, ଚିନି ଦେଇ ଦୁଇ ମିନିଟ୍ କଷନ୍ତୁ । ତା'ପରେ ପ୍ରତ୍ୟେକ ପୋଟଳ ଭିତରେ ଏହି ମିଶ୍ରଣ ଦେଇ ପୋଟଳକୁ ପୂର୍ଣ୍ଣ କରନ୍ତୁ । ଏଥର ବାକି ତେଲକୁ କଢ଼ାଇରେ ଗରମ କରି ପୋଟଳ ଗୁଡ଼ିକୁ ଅଳ୍ପ ଆଞ୍ଚରେ ଭାଜନ୍ତୁ । ବାଦାମୀ ରଙ୍ଗ ହୋଇଗଲେ ତାକୁ ଓହ୍ଲାଇ ଭାତ ସହ ପରିବେଷଣ କରନ୍ତୁ ।

# ନିରାକାରରୁ ଆକାର ପର୍ଯ୍ୟନ୍ତ



ମୀନକେତନ ପଟ୍ଟନାୟକ



Sangita Patnaik, Fruit of tradition - I, Acrylic on canvas, 27 inches X 46 inches, 2011

ସାଧାରଣତଃ କଳା କହିଲେ ଆମେ ଦୃଶ୍ୟକଳାକୁ ହିଁ ବୁଝିଥାଉ । ଏହାର ଦୁଇଟି ପ୍ରକାର ଭେଦ ରହିଛି ଯଥା – ଚାରୁକଳା ଓ କାରୁକଳା । ଏହି କାରୁକଳା ବା କ୍ରାଫ୍ଟ ଦୃଶ୍ୟସ୍ଥଳେ ସୂକ୍ଷ୍ମତା ବହନ କରୁଥିଲେ ହେଁ ତାହାଉ ସ୍ଥୂଳତ୍ୱ ଶ୍ରେଣୀୟ ଭାବେ ଗ୍ରହଣ କରାଯାଏ କାରଣ ଏଥିରେ ସୃଜନ ଅପେକ୍ଷା ରିପିଟେସନ ଅଧିକ ଥାଏ । ଠିକ୍ ତାର ଓଲଟା ହେଲା ଚାରୁକଳା ବା ଫାଇନ୍ ଆର୍ଟ୍, ଯାହାର ସୂକ୍ଷ୍ମତାକୁ ଅନ୍ତଃଦୃଷ୍ଟିରେ ହିଁ କେବଳ ଦେଖିହୁଏ, ଅବଶ୍ୟ ଏହା ପୁରାପୁରି ଭାବରେ ନିର୍ଭର କରେ ରସଗ୍ରହୀତାଙ୍କ ରସ ଗ୍ରହଣ କରିବାର ସାମର୍ଥ୍ୟ ଉପରେ । କ୍ରାଫ୍ଟ ସାବଲୀଳ, ସୁନ୍ଦର ଓ ବୋଧଗମ୍ୟ ହୋଇଥିବାବେଳେ ଆର୍ଟ୍ କିନ୍ତୁ ଦର୍ଶନଯୁକ୍ତ, ଦୀର୍ଘସ୍ଥାୟୀ ଓ ଦୁର୍ମୂଲ୍ୟ ହୋଇଥାଏ । ଗୋଟିଏରେ ପରମ୍ପରା ଦ୍ୱାହି ଥିଲା ବେଳେ ଅନ୍ୟଟିରେ ନୂତନ ଗବେଷଣାର ଧାରା ପ୍ରତୀୟମାନ ହୋଇଥାଏ । ଛବିରେ ସୁନ୍ଦର ରଙ୍ଗବିନ୍ୟାସ, ସୁସଜ୍ଜିତ ସଜ୍ଜିକରଣ, ରୈଖିକ ମାଧୁର୍ଯ୍ୟ ଆଦି କ୍ରାଫ୍ଟ ଶ୍ରେଣୀୟ କିନ୍ତୁ ସେହି ଛବିରେ ଥିବା ଦର୍ଶନ ଚେତନା, ସମାଜ ପାଇଁ ନୂତନ ବାର୍ତ୍ତା, ଆଦିକୁ ଆର୍ଟ କୁହାଯାଏ । ବିଶେଷ କରି ସମକାଳୀନ କଳା ଅନ୍ଦୋଳନ ଏହି ଭାଷାରେ ଭରସା କରେ ଓ ନିରାକାରକୁ ଆକାର ଯୁକ୍ତ କରି ଗଢ଼ି ତୋଳିବାର ନିରନ୍ତର ପ୍ରୟାସ ଭାବରେ ଆଗକୁ ବଢ଼ିଚାଲେ ।

ଛଅଜଣ ଆଧୁନିକ ଚିତ୍ରଶିଳ୍ପୀ ଦିଲ୍ଲୀସ୍ଥିତ ଭାରତର ସର୍ବପୁରାତନ ଆର୍ଟ ଗ୍ୟାଲେରୀ ଅଲ୍ ଇଣ୍ଡିଆ ଫାଇନ୍ ଆର୍ଟ୍ସ ଆଣ୍ଡ କ୍ରାଫ୍ଟ ସୋସାଇଟିଠାରେ ଆୟୋଜିତ ଏକ ମିଳିତ କଳା ପ୍ରଦର୍ଶନୀରେ ଅଂଶଗ୍ରହଣ କରିଥିଲେ । ପ୍ରଦର୍ଶନୀର ସଂଯୋଜକ ଥିଲେ ବାଲେଶ୍ୱରର ଶିଳ୍ପୀ ଗଙ୍ଗା ନାରାୟଣ ମହାରଣା । ଫେବୃଆରୀ ୧ ରୁ ୫ ତାରିଖ ପର୍ଯ୍ୟନ୍ତ ପ୍ରଦର୍ଶିତ 'ଆକାର ୨୦୧୨' ଶୀର୍ଷକ କଳା ପ୍ରଦର୍ଶନୀରେ ଦୁଇଜଣ ନାରୀ ଶିଳ୍ପୀ ଓ ତିନିଜଣ ଓଡ଼ିଆ ଶିଳ୍ପୀ ଅଂଶ ଗ୍ରହଣ କରିଥିଲେ । ସେମାନଙ୍କ ମଧ୍ୟରେ ଥିଲେ ମୋର ଦୁଇଜଣ ସହପାଠୀ । ଭୁବନେଶ୍ୱର ସ୍ଥିତ ବି. କେ. ଆର୍ଟ୍ କଲେଜର ଚତୁର୍ଥ ବ୍ୟାଚର (୧୯୯୧ ମସିହାର) ସଂଗୀତା ପଟ୍ଟନାୟକ, ଗଙ୍ଗାନାରାୟଣ ମହାରଣା ଓ ମୁଁ ଏଥିରେ ଅଂଶ ଗ୍ରହଣ କରିଥିଲୁ । ପ୍ରଦର୍ଶିତ ଛବି ଗୁଡ଼ିକ



Suneet Paul, Tree of life - 1, Acrylic on canvas, 43 inches X 33 inches, 2011



Ganganarayan Maharana, Immigration - I, Acrylic on canvas, 72 inches X 72 inches, 2011

ମଧ୍ୟରେ ଶୈଳୀଗତ ତଥା ଦର୍ଶନଗତ ବିଭିନ୍ନତା ପ୍ରତ୍ୟେକ ଶିଳ୍ପୀଙ୍କର ସ୍ୱରଚନାରେ ବିବିଧତାର ବାର୍ତ୍ତା ଦେଉଥିଲା । କଲିକତାର ବବିତା ସିଂ ନାରୀ ମନସ୍ତତ୍ୱ ସହ ଫୁଲଦାନୀର ତୁଳନାତ୍ମକ ବିଶ୍ଲେଷଣ ତାଙ୍କ ଛବି ମାଧ୍ୟମରେ ଦର୍ଶାଇଥିଲେ । ଶିଳ୍ପୀଙ୍କର ରଙ୍ଗବିନ୍ୟାସ ଓ ତୁଳିକା ଚାଳନାରେ ସରଳତାର ଝଲକ ଦୃଷ୍ଟିଗୋଚର ହେଉଥିଲା । ବବିତା ଏହା ପୂର୍ବରୁ ନ୍ୟୁୟର୍କ୍, ସିଙ୍ଗାପୁର୍, ଦୁବାଇ ଭଳି ଅନେକ ସହରରେ ଏକକ ତଥା ମିଳିତ କଳା ପ୍ରଦର୍ଶନୀରେ ଅଂଶଗ୍ରହଣ କରିଛନ୍ତି । ନାଇରୋବି ଜନ୍ମିତ ଦିଲ୍ଲୀବାସୀ ସୁନିତ୍ ପଲ୍ଙ୍କ ଛବିରେ ପ୍ରତୀକବାଦର ପ୍ରବଳ ପ୍ରଭାବ ପରିଲକ୍ଷିତ ହେଉଥିଲା । ଉଜ୍ଜ୍ୱଳ ରଙ୍ଗ, ପ୍ରଗାଢ଼ତାର ଆଲୋକଛାୟା, ଆକୃତିରେ ଗତି ଆଦି ଶିଳ୍ପୀଙ୍କ ଛବିର ବିଶେଷତ୍ୱ ଥିଲା । ତାଣ୍ଡବ, ଅଙ୍କୁରଣ, ତ୍ରି ଲାଇଫ୍ ଆଦି କଳାକୃତୀ ଗୁଡ଼ିକ ବେଶ୍ ଆକର୍ଷଣୀୟ ଥିଲା । ସୁନିତ୍ ପେଷାରେ ଜଣେ ସ୍ଥପତି ହୋଇଥିଲେ ହେଁ କଳାପ୍ରତି ତାଙ୍କର ନିବିଡ଼ତା ଓ ପାରଙ୍ଗମତା ଛବି ଗୁଡ଼ିକୁ ଦେଖିଲେ ସହଜରେ ଅନୁମାନ କରିହୁଏ । ମୁମ୍ବାଇର ପି. କଶ୍ୟପ ମଶୃଣତା ବା ଟେକସ୍‌ଚର୍‌ର ଯାଦୁଗର ଅଟନ୍ତି । ସେ ଆଭାଷବାଦର ଚିତ୍ରକର ଅଟନ୍ତି ତେଣୁ ତାଙ୍କର ଛବି ଗୁଡ଼ିକୁ ଦର୍ଶକମାନେ ନିରିଖେଇ ଦେଖୁଥିଲେ ଓ ଶିଳ୍ପୀଙ୍କ ଧୈର୍ଯ୍ୟର ପ୍ରଶଂସା କରୁଥିଲେ । ଶିଳ୍ପୀ ପ୍ରାୟତଃ ପାରିବାରିକ ବନ୍ଧନ ଓ ସାମାଜିକ ବନ୍ଧନ ଓ ସାମାଜିକ ଦାୟିତ୍ୱବୋଧ ଉପରେ ଅଧିକାଂଶ ଛବି ଆଙ୍କିଥିଲେ । ଅନ୍ୟ ଶିଳ୍ପୀମାନଙ୍କର ଆକ୍ରିଲିକ୍ ମାଧ୍ୟମର ଛବି ପ୍ରଦର୍ଶିତ ହୋଇଥିବା ବେଳେ କଶ୍ୟପଙ୍କର କିନ୍ତୁ ଅନେକ ତୈଳଚିତ୍ର ପ୍ରଦର୍ଶିତ ହୋଇଥିଲା । ଖୋର୍ଦ୍ଧା ଜିଲ୍ଲା ଓଳସିଂହ ଗ୍ରାମରେ ଜନ୍ମିତ ସଂଗୀତା ପଟ୍ଟନାୟକ ଓଡ଼ିଶାର ଜଣେ ଆଗଧାଡ଼ିର ନାରୀ ଶିଳ୍ପୀ ଅଟନ୍ତି । ସେ ସମକାଳୀନ କାନ୍‌ଭାସ ସହ ଓଡ଼ିଶୀ ପଟ୍ଟଚିତ୍ରର ଜଣେ ପୋଖତ ଚିତ୍ରକର ହୋଇଥିବାରୁ ତାଙ୍କ 'ଫୁଟ୍ ଅଫ୍ ଟ୍ରାଡ଼ିସନ୍' ସିରିଜର ଛବି ଗୁଡ଼ିକରେ



Meenaketan Pattnaik, Romance factor, Acrylic on canvas, 42 inches X 42 inches, 2011



P. Kashyap, Relationship - 1, Oil on canvas, 36 inches X 36 inches, 2009


Babita Singh, Flower vase and woman - 1, Acrylic on canvas, 24 inches X 30 inches, 2010

ଓଡ଼ିଶାର ପାରମ୍ପାରିକ ପଟ୍ଟଚିତ୍ର ଓ ସମକାଳୀନ କଳାର ଏକ ମିଶ୍ରରାଗ ପରିଲକ୍ଷିତ ହୋଇଥିଲା । ରୈଖିକ ପ୍ରାଧାନ୍ୟଯୁକ୍ତ ଏହି ସଜ୍ଜୀକରଣ ଗୁଡ଼ିକରେ ପରମ୍ପରା ସହ ଆଧୁନିକତାର ସମ୍ପର୍କକୁ ଅତି ପରୀକ୍ଷାମୂଳକ ଶୈଳୀରେ ଚିତ୍ରବାର୍ତ୍ତା ଦେଇଛନ୍ତି ଶିଳ୍ପୀ ସଂଗୀତା । ଭାରତୀୟ ସ୍ୱର ବର୍ଣ୍ଣନା ସହ ପାଶ୍ଚାତ୍ୟର ସ୍ୱର ସାଧନାକୁ ଚିତ୍ର ରୂପରେ ଆଙ୍କିବାକୁ ଯାଇ ସଂଗୀତା ସାତ ସୁରର ମୂଳଉତ୍ସ ପ୍ରାଣୀ ଜଗତର ଧ୍ୱନିଗତ ପ୍ରଭାବକୁ ଦେଖାଇବା ସହ ସ୍ୱରଦେବୀ ସରସ୍ୱତୀ ଓ ସ୍ୱରଯନ୍ତ୍ର ଗ୍ରାମୋଫୋନର ଯୁଗଳବନ୍ଦୀକୁ ଚିତ୍ରାୟିତ କରିଛନ୍ତି । ଗଙ୍ଗାନାରାୟଣଙ୍କ ଛଅ ଫୁଟ୍‌ରେ ଛଅ ଫୁଟ୍ ଆକାରର ବିରାଟ ବିରାଟ କାନ୍‌ଭାସ ସାମାଜିକ ଓ ଆର୍ଥିକ ସ୍ଥାନାନ୍ତରଣ ଜନିତ ବିଷୟବସ୍ତୁକୁ ଦର୍ଶାଇଛନ୍ତି । ପ୍ରଦର୍ଶନୀର ମୁଖ୍ୟ ଆକର୍ଷଣ ଥିଲା ଗଙ୍ଗାନାରାୟଣଙ୍କର ପାଳଭୂତ ଛବିଟି । ଏଥିରେ ଶିଳ୍ପୀ ଗାଁ ପରିବା କ୍ଷେତରେ ପାଳଭୂତ (Scare crew) କୁ ଗାଁର ଟ୍ରାଫିକ୍ ପୋଲିସ ଆକାରରେ ଚିତ୍ରିତ କରିଥିବା ବେଳେ ସହରର ଚାରିଛକିରେ ଠିଆ ଟ୍ରାଫିକ୍ ହାବିଲ୍‌ଦାରକୁ ସହରର ପାଳଭୂତ ଭାବରେ ଦର୍ଶାଇଛନ୍ତି । ଏଥିରେ କିଛି ଜୀବଜନ୍ତୁ ଗାଁ ପଟରୁ ବାହାରି ସହରାଭିମୁଖୀ ହେଉଥିବା ଅଙ୍କାଯାଇଛି । ସେହିପରି ଅନ୍ୟ ଏକ ଛବିରେ ଅଧାଲଙ୍ଗଳା ବାଳକଟିଏ ସପିଙ୍ଗମଲ୍ ନିକଟରେ ଠିଆ ହୋଇ 'ସହରର ଲୋକମାନେ କ'ଣ ଆମ ଗାଁ ଲୋକଙ୍କ ଠାରୁ ଅଧିକ ଗରୀବ କି?' ବୋଲି ନିଜକୁ ନିଜେ ପଚାରୁଛି, କାରଣ ସେ ଦେଖୁଛି ଯେ ସହରର ମହିଳା ଓ ପୁରୁଷମାନେ ସ୍ୱଳ୍ପବସ୍ତ୍ର ପରିହିତ । ଆଉ ଗୋଟିଏ ଛବିରେ ଜଣେ ଦାଦନ ଶ୍ରମିକକୁ ଠେଲାଗାଡ଼ି ଉପରେ ବସି ବିଶ୍ରାମ କରୁଥିବା ମୁଦ୍ରାରେ ଦର୍ଶାଇ, ଶ୍ରମିକଟି କେବେ ଦାମି ମଟରଗାଡ଼ିଅର ମାଲିକ ହେବ, ସେ ସ୍ୱପ୍ନରେ ବୁଡି ଯାଇଥିବାର ଦୃଶ୍ୟ ଅଙ୍କନ କରିଛନ୍ତି । ମୋର ସମୁଦାୟ ପାଞ୍ଚଟି ଛବି ଏହି ପ୍ରଦର୍ଶନୀରେ ପ୍ରଦର୍ଶିତ ହୋଇଥିଲା ଓ ସେଗୁଡ଼ିକ ପ୍ରାୟତଃ ବର୍ତ୍ତମାନ ଯୁଗର ଯୁବକ ମାନଙ୍କ ମନରେ ବୃଦ୍ଧିପାଉଥିବା ଅସ୍ଥିରତାକୁ ବିଷୟବସ୍ତୁ ଭାବେ ଆଙ୍କିଛି ।



ପ୍ରଦର୍ଶନୀରେ ପ୍ରଦର୍ଶିତ ହୋଇଥିବା ଛବିଗୁଡ଼ିକ ମଧ୍ୟରୁ ମୋର ଗୋଟିଏ ଛବି ଏକ ଲକ୍ଷ ଟଙ୍କାରେ ଓ କଶ୍ୟପଙ୍କ ଛୋଟ ଛବିଟିଏ ପଚାଶ ହଜାର ଟଙ୍କାରେ ବିକ୍ରି ହୋଇଯାଇଥିଲା । ଅନ୍ୟମାନଙ୍କ ମଧ୍ୟରୁ ସଂଗୀତାଙ୍କ ଦୁଇଟି ଛବି ଏକ ନିର୍ଦ୍ଦିଷ୍ଟ ଗ୍ୟାଲେରୀ କନ୍‌ସାଇନ୍‌ମେଣ୍ଟରେ ନେଇଥିଲା ବେଳେ ଗଙ୍ଗାନାରାୟଣଙ୍କ ଛବି ଉପରେ କିଛି ଆର୍ଟ୍ ଡ଼ିଲରଙ୍କ ନଜର ରହିଛି । ପୁରାପୁରି ଭାବେ ଦେଖିବାକୁ ଗଲେ ନିରାକାର ଓ ଆକାରର ଏକ ଫେଣ୍ଟାଫେଣ୍ଟି ରୂପ ବହନ କରୁଥିବା ଏହି ଛୋଟିଆ ପ୍ରଚେଷ୍ଟାଟିକୁ ଏକ ସଫଳ ପ୍ରଦର୍ଶନୀ କୁହାଯାଇପାରେ ।

# ମୋ ଭ୍ରମଣ କାହାଣୀ-୪



ପ୍ରଶାନ୍ତ କୁମାର ଭୂୟାଁ

'ଏ ମେରେ ରାଜା, ମେରା ହୀରୋ; କିଧର ଚଲାଗୟାରେ ତୁ ?'

ଏ କଥା ଶୁଣି ମୁଣ୍ଡ ପଛକୁ ବୁଲାଇବାକୁ ଚେଷ୍ଟା କରୁଥିଲି । ହଠାତ୍ କେହି ଜଣେ ମୋର ମୁଣ୍ଡ ଉପରେ ତାର ହାତ ରଖି ସାରିଥିଲା । ହତବାକ୍ ହୋଇ ସେ ହାତଟାକୁ ଛିଞ୍ଚାଡ଼ି ଦେଇ ଦେଖେ ତ ରେଳଗାଡ଼ି ଭିତରେ ଦଳେ ହିଞ୍ଜଡ଼ା ତାଙ୍କର ମନୋରଞ୍ଜନ କାର୍ଯ୍ୟକ୍ରମ ଆରମ୍ଭ କରି ଦେଇଛନ୍ତି । ମୋ ମୁଣ୍ଡରେ ହାତ ପକାଇଥିବା ହିଞ୍ଜଡ଼ାଟି ସେତେବେଳେ ପୁଣି ମୋ କାନ୍ଧରେ ହାତ ପକାଇ କହିଉଠିଲା, 'କ୍ୟା ରେ ସରେ ଆମ୍, ବଦନାମ୍ କରେଗା କ୍ୟା ?' ବିଚିତ୍ର ପରିସ୍ଥିତି ! ବିଚିତ୍ର ଅନୁଭୂତି !! ବିଚିତ୍ର ସେ ପରିବେଶ !!! ମୋ ପାଖରେ ବସିଥିବା ବୃଦ୍ଧ ବ୍ୟକ୍ତି ଜଣକ କହିଲେ, ସେ ହିଞ୍ଜଡ଼ାକୁ କିଛି ପଇସା ଦେଇ ଦିଅ ସେ ଚାଲିଯିବ । ପକେଟରେ ହାତମାରି ୨ ଟଙ୍କିଆ ନୋଟ୍‌ଟାଏ ବାହାର କଲି ଦେବାପାଇଁ । କିନ୍ତୁ, ହାୟ ରେ ବିଧାତା ! ସମସ୍ତଙ୍କ ଆଗରେ ମୋର ସମ୍ମାନକୁ ଆହୁରି ମାଡ଼ି ମକଚି ସେଇ ହିଞ୍ଜିଡ଼ା ସୁନ୍ଦରୀ କହି ଉଠିଲା, 'କ୍ୟା ରେ ହୀରୋ ! ଭିକ୍ ନହିଁ ମାଙ୍ଗରହା ହୁଁ, ହକ୍ ହେ ମେରା ତେରେ କମାଇ ପେ, ଦେନା ରେ' । କଥାଟାକୁ ଆଉ ଆଗକୁ ନ ବଢ଼ାଇ ୧୦ ଟଙ୍କିଆ ନୋଟ୍ ଟାଏ ବଢ଼ାଇଦେଲି । ନୋଟ୍‌ଟାକୁ ନେଇ ଶୂନ୍ୟରେ ଚୁମା, ମୋ ମୁଣ୍ଡରେ ଆଶୀଷ ଆଉ ତା ଶରୀରଟାକୁ ଟିକେ ଝାଙ୍କିଦେଇ ସେ ଆଗକୁ ଚାଲିଲା ଗୀତଗାଇ, 'ମେରେ ଅଙ୍ଗନେ ମେ ତୁମ୍ହାରା କ୍ୟା କାମ୍ ହୈ !!' ଏୟା ଥିଲା ମୁମ୍ବାଇ ଲୋକାଲ୍ ଟ୍ରେନ୍‌ରେ ମୋର ଅନୁଭୂତି ।

ବିରାର୍ ଠାରୁ ଚର୍ଚ୍ଚଗେଟ୍ ଯାଏଁ ଯାଉଥିବା ଏହି ଟ୍ରେନ୍‌ଟି ଧିରେ ଧିରେ ଅତି ସନ୍ତର୍ପଣରେ ଚର୍ଚ୍ଚଗେଟ୍ ଷ୍ଟେସନ ଭିତରକୁ ମୁହାଉଁଥିଲା । ଭୟାନ୍ଦର ଠାରୁ ଚର୍ଚ୍ଚଗେଟ୍ ଷ୍ଟେସନ ଯାଏଁ ଆସିବାକୁ ଆମକୁ ୭୫ ମିନିଟ୍ ପ୍ରାୟ ଲାଗିଥିଲା । ଷ୍ଟେସନରେ ଓହ୍ଲାଇ ପ୍ଲାଟ୍‌ଫର୍ମ ବାହାରକୁ ଆସିଲୁ ନୀଲୁ ଆଉ ମୁଁ । ବାହାରେ ଆସି ଦେଖିଲି ଅତ୍ୟୁଚ୍ଚ ଅଟ୍ଟାଳିକା ସବୁ ଯେମିତି ନିଜ ନିଜ ଭିତରେ ପ୍ରତିଦ୍ୱନ୍ଦିତା କରୁଛନ୍ତି ଆକାଶକୁ ଛୁଇଁବାକୁ । ଗାଁ ଶାଳବଣର ଶାଳ ପିଆଶାଳ ଓ ଶାଗୁଆନ୍ ଗଛ ଭଳି ଧାଡ଼ିକି ଧାଡ଼ି ସମସ୍ତେ ଭିଡ଼ ଜମାଇ ବସିଛନ୍ତି । ସହରଟା ସାରା ଏହିଭଳି ନଭଶ୍ଚୁମ୍ବୀ କୋଠାବାଡ଼ି ପସରା ମେଲାଇ ହେଲାଭଳି ବିଛାଡ଼ି ହୋଇ ପଡ଼ିଛନ୍ତି । ଜନାରଣ୍ୟ ଅତୀବ କୋଳାହଳମୟ । ବେଶ ପୋଷାକ ଭଳିକି ଭଳି । କିଏ ଆଧୁନିକ ଢ଼ଙ୍ଗରେ ତ କିଏ ନିରାଡ଼ମ୍ବରରେ । କିଏ ସାହେବ ହାକିମ ପରି ତ କିଏ ନିର୍ଧନ ହତଶୀରି । ବାଃ ରେ ବମ୍ବେଇ ବାଃ !!

ଆମେ ଦୁଇଜଣ ସାଙ୍ଗ ନିକଟରେ ଥିବା ମାଗାଜିନ୍ ଷ୍ଟଲରେ ପଚାରି ବୁଝିଲୁ ଯେ 'ଗେଟ ୱେ ଅଫ୍ ଇଣ୍ଡିଆ'କୁ ଚାଲି ଚାଲି ସେଠାରୁ ଯାଇହେବ । ସେଇଠୁ ରାସ୍ତାର ନକ୍ସା ବୁଝି ଚାଲିବାକୁ ଆରମ୍ଭ କଲୁ ।

'ବୀର ନରିମାନ୍ ରୋଡ଼'ରେ କିଛି ବାଟ ଆଗେଇଲା ପରେ 'କର୍ମବୀର ଭାଉରାଓ ପାଟିଲ୍ ମାର୍ଗ'ରେ ଆଗକୁ ବଢ଼ିବାକୁ ଲାଗିଲୁ ଡ଼ାହାଣ ପଟେ । ସେଠାରୁ ଆଗକୁ କିଛି ବାଟ ଅଗ୍ରସର ହେଲାପରେ ବାମପଟରେ ଥିବା 'ମାଡ଼ାମ୍‌କାମା' ରୋଡ଼ରେ ମିଶିଲୁ । ଧିରେ ଧିରେ ସନ୍ଦେହ ଘନୀଭୂତ ହେବାରେ ଲାଗିଲା ଆମେ ଠିକ୍ ରାସ୍ତାରେ ଅଛୁ ତ ? ଏ ରାସ୍ତା କଣ ସରୁନାହିଁ । ଦୁଇଜଣ ସାଙ୍ଗ ଏଇମିତି କଥା ବାର୍ତ୍ତା ହୋଇ ଏକ ବୃହଦାକାର ଛକରେ ପହଞ୍ଚିଲୁ । ପଚାରି ବୁଝିଲୁ ଯେ ଏହା 'ୱେଲିଙ୍ଗ୍‌ଟନ୍ ସର୍କଲ୍' । ମୋ ବନ୍ଧୁ କହିଲେ, ଆଉ ଚାଲିବା ନାହିଁ, ଗୋଟାଏ ଟାକ୍ସି କରିଯିବା ।

ମୁଁ ସେଥିରେ ଏକମତ ହେଲି ଏବଂ ହର୍ଣ୍ଣ ବଜାଇ ଚାଲିଯାଉଥିବା ଏକ ଟାକ୍ସିକୁ ରହିବାକୁ ଇସାରା କଲି । ଟାକ୍ସି ଡ୍ରାଇଭର ଆମକୁ ଗନ୍ତବ୍ୟସ୍ଥଳ ବିଷୟରେ ପଚାରିଲା । ମୋଠାରୁ ଉତ୍ତର ଶୁଣିଲା ପରେ ସେ ହସ ହସ ମୁହଁରେ କହି ଉଠିଲା –

'ବୁରା ନହିଁ ମାନ୍ ନେ କା । ଗେଟ୍ ୱେ ଅଫ୍ ଇଣ୍ଡିଆ ବହୁତ୍ ପାସ୍ ହୈ । ୪୦୦-୫୦୦ ମିଟର୍ କା ହି ଦୂର ହୈ, କ୍ୟୋଁ ପୈସା ବରବାଦ କର୍‌ନେକା – ହୈ କି ନହିଁ ସାହେବ୍ ?'

ତା କଥାରେ ହଁ ଭରିଲି, ସେ ପୁଣି ହର୍ଣ୍ଣ ବଜାଇ ଆଗକୁ ବଢ଼ିଗଲା ହେଲେ ମୋର ମନଟା ଉଦାସ ହୋଇଗଲା ଅତୀତର କିଛି ସ୍ମୃତି ରୋମନ୍ଥନ କରି ।

କଥାଟା ଖୋଲି କରି କହେ...

ମୁଁ ଭଞ୍ଜନଗରରେ ଯୁକ୍ତ ଦୁଇ ବିଜ୍ଞାନ ପଢ଼ିଲା ବେଳେ ବ୍ରହ୍ମପୁର ସହରକୁ ଆସିଥିଲି ବୁଲିବା ପାଇଁ । ସେତେବେଳେ ବିଜୟା ସିନେମା ହଲ୍‌ରେ କୁଲୀ ସିନେମା ଶୁଭମୁକ୍ତି ହୋଇଥାଏ । ମଧ୍ୟାହ୍ନ ଭୋଜନ ଖାଇବା ନିମନ୍ତେ ବିଖ୍ୟାତ ଗିରିଜା ରେସ୍ତୋରାଁକୁ ଯାଇଥିଲି । ଭୁରି ଭୋଜନଟାଏ ଉଦରଗତ କରି ସେଠୁ ବାହାରକୁ ଆସିଲି । ଗୋଟାଏ ରିକ୍ସା ବାଲାକୁ ପଚାରିଲି 'କିରେ ବିଜୟା ହଲକୁ ଯିବୁ ?' ମୋ ଆଡ଼କୁ ଗୋଟାଏ ତେରେଛା ଚାହାଣୀ ଦେଇ ବଡ଼ କଷ୍ଟରେ ସେ ହଉ ବସ ବୋଲି କହିଲା ।

ମନରେ ମୋର ବି କଷ୍ଟ ହେଲା । ଭାବିଲି ବିଚରାଟାକୁ ଭୋକ ବୋଧହୁଏ ହେଉଥିବ । ଖାଇବାକୁ ଆସିଥିଲା । ମୁଁ ଏପଟେ ଡ଼ାକିବାରୁ ଭଡ଼ାର ଲୋଭ ସମ୍ବରଣ କରିନପାରି ଭୋକିଲା ପେଟ ନେଇ ମୋତେ ସିନେମା ହଲ୍‌କୁ ନେଉଛି । ମୁଁ ପଚାରିଲି କେତେଟଙ୍କା ନେବୁ ସେ କହିଲା ୬ ଟଙ୍କା । ମୁଁ ଆଉ ବେଶୀ ମୂଲଚାଲ ନ କରି କହିଲି, 'ଏତେ ବେଶୀ କହନା ମୋତେ, ମୁଁ ୫ ଟଙ୍କା ଦେବି, ଚାଲ୍' । ସେ କହିଲା, 'ହଉ, ବସ' ।

ସେ ମୋତେ ବଳିର ବୋଦା କରିସାରିଥିଲା । କାରଣ ତାର ଜଟିଳ ମନର କୁଟୀଳ ବୁଦ୍ଧି ମୋ ସରଳ ଭାବନାର ପରିସର ବାହାରେ ଥିଲା । 'ଗିରିଜା ରେସ୍ତୋରାଁ' ଆଗରେ ଠିଆ ହେଲେ ୨୫୦ ମିଟର ଦୂରରେ 'ବିଜୟା ହଲ୍' ଦିଶୁଥାଏ । ଏହା ମୁଁ ବ୍ରହ୍ମପୁରକୁ ପଢ଼ିବାକୁ ଆସିଲା ପରେ ଜାଣିଥିଲି ।

ରିକ୍ସାବାଲା, ମୋତେ ଏସ୍.ଏସ୍.ଭି.ଟି. ହଲ୍, ସିଟି ହାଇସ୍କୁଲ୍, ହନୁମାନ ମନ୍ଦିର ଓ ଗିରି

ମାର୍କେଟ୍ ଦେଇ ବିଜୟା ହଲରେ ଓହ୍ଲାଇ ଦେଇଥିଲା ଏବଂ ମୋ ଠାରୁ ୫ଟଙ୍କା ସେଦିନ ଲୁଟି ନେଇଥିଲା କହିଲେ ଚଳେ ।

କିନ୍ତୁ ଆଜି ଏହି ଅଜଣା ରାଜ୍ୟରେ ଏକ ଅଚିହ୍ନା ବ୍ୟକ୍ତି ମୋତେ ପଇସା ଖର୍ଚ୍ଚ ନ କରାଇ ବୁଝେଇ ଚାଲିଗଲା ।

ମନରେ ଭାବନା ଆସିଲା ଅତୀତରେ ମୋ ଓଡ଼ିଆ ରିକ୍ସାବାଲା ମୋତେ ହିଁ ଠକିଥିଲା । ୨୫୦ ମିଟର ରାସ୍ତାକୁ ଦୁଇଘେରା ଅନ୍ୟରାସ୍ତା ବୁଲାଇ ମୋଠାରୁ ୫ ଟଙ୍କା ନେବାକୁ ତିଳେ ହେଁ କୁଣ୍ଠାବୋଧ କରିନଥିଲା !!!

ଅତୀତରୁ ଫେରିଆସିଲି ବର୍ତ୍ତମାନକୁ । ଆମେ ଦୁଇ ସାଙ୍ଗ ସେଠାରୁ 'ଶହିଦ୍ ଭଗତ୍ ସିଂହ' ମାର୍ଗ ଦେଇ ଆଗକୁ ବଢ଼ିଚାଲିଲୁ । ଦୂରରୁ ଦୃଷ୍ଟି ଗୋଚର ହେଲା 'ତାଜ୍ ପେଲେସ୍ ଏଣ୍ଡ ଟାୱାର୍' ଏବଂ 'ଗେଟ୍ ୱେ ଅଫ୍ ଇଣ୍ଡିଆ' ।

## ଗେଟ୍ ୱେ ଅଫ୍ ଇଣ୍ଡିଆ : -

ହିନ୍ଦୁ ଓ ମୁସଲ୍‌ମାନ ଶୈଳୀର ମିଶ୍ରଣରେ ନିର୍ମିତ ଏହି ଐତିହାସିକ ତୋରଣଟି ୩୧ ମାର୍ଚ୍ଚ ୧୯୧୧ରେ ଆରମ୍ଭ ହୋଇ ୧୯୨୪ ମସିହାରେ ସମ୍ପୂର୍ଣ୍ଣ ହୋଇଥିଲା । ୨୬ ମିଟର ଉଚ୍ଚତା ବିଶିଷ୍ଟ ଏହି ତୋରଣଟିର ଯନ୍ତ୍ରୀଥିଲେ ଜର୍ଜ ୱିଟେଟ୍ । ରାଜା ପଞ୍ଚମ ଜର୍ଜ ଏବଂ ରାଣୀ ମେରୀଙ୍କର ଅଭ୍ୟର୍ଥନା ଏହି ଦ୍ୱାରଦେଶରେ ହୋଇଥିଲା ।

୨୮ ଫେବୃଆରୀ ୧୯୪୮ ମସିହାରେ ଏହି 'ଗେଟ୍ ୱେ ଅଫ୍ ଇଣ୍ଡିଆ' ଦେଇ ଶେଷ ବ୍ରିଟିଶ ଛାଉଣୀ ଇଂଲଣ୍ଡ ଫେରିଯାଇଥିଲେ । ସର୍ବସାଧାରଣଙ୍କ ନିମନ୍ତେ ଏହା ୪ ଡ଼ିସେମ୍ବର ୧୯୨୪ ମସିହାରେ ଅର୍ପଣ କରାଯାଇଥିଲା ।

## ତାଜ୍ ମହଲ୍ ପେଲେସ୍ ଆଣ୍ଡ୍ ଟାୱାର୍ : -

'ଗେଟ୍ ୱେ ଅଫ୍ ଇଣ୍ଡିଆ'ର ପଡ଼ୋଶୀ ଏହି ବିଳାସମୟ ହୋଟେଲଟି ବମ୍ବେ ସହରର ଇତିହାସ ସାଙ୍ଗରେ ଅଙ୍ଗାଙ୍ଗୀ ଭାବେ ଜଡ଼ିତ ।

୧୬ ଡ଼ିସେମ୍ବର ୧୯୦୩ରେ ଏହି ହୋଟେଲର ଶୁଭାରମ୍ଭ ହୋଇଥିଲା । ୨୨ ମହଲାର ଏହି ହୋଟେଲରେ ୫୬୫ଟି ଅତିଥିଗୃହ, ୪୬ଟି ବିଳାସକକ୍ଷ ଏବଂ ୧୧ଟି ରେସ୍ତୋରାଁ ରହିଛି ।

ଏହି ହୋଟେଲର ନିର୍ମାଣ ପଛରେ ଅନେକ କାହାଣୀ ଅଛି । ସେଥିରୁ ଗୋଟିଏ ହେଲା ଜଣେ ଭାରତୀୟଙ୍କର ସ୍ୱାଭିମାନର କାହାଣୀ । ଗପହେଲେ ବି କଥାଟା ସତ.. ଟିକିଏ ମିଛ ନୁହେଁ ।

ସେହି ମହାନ୍ ଭାରତୀୟ ଜଣକ ହେଲେ ଜାମସେଦ୍‌ଜୀ ଟାଟା ।

ସେତେବେଳେ ବମ୍ବେର ଏକ ଆଭିଜାତ୍ୟ ହୋଟେଲ୍ ଥିଲା 'ୱାଟ୍‌ସନସ ହୋଟେଲ୍' । ଏହା କେବଳ ଗୋରା ଲୋକମାନଙ୍କ ପାଇଁ ଉଦ୍ଦିଷ୍ଟ ଥିଲା । ଏଣୁ, ଥରେ ଜାମସେଦ୍‌ଜୀଙ୍କୁ ସେଠାରେ ପ୍ରବେଶ ନିଷେଧ କରାଯାଇଥିଲା । ଜାମସେଦ୍‌ଜୀଙ୍କୁ ତାହା ବହୁତ ବାଧିଥିଲା । ଏଣୁ ସେ ସମସ୍ତଙ୍କ ନିମନ୍ତେ ଏହି ବିଳାସମୟ ହୋଟେଲ୍‌ର ନିର୍ମାଣ କରାଇଥିଲେ ।

୨୬ ନଭେମ୍ବର ୨୦୦୮ରେ ଏହି ହୋଟେଲରେ ଆତଙ୍କବାଦୀମାନେ ନିଷ୍ଠୁର ଭାବରେ ଦମନଳୀଳା ଚଳାଇଥିଲେ । ଦୀର୍ଘ ୬୦ ଘଣ୍ଟାର ଯୁଦ୍ଧପରେ 'ତାଜ୍ ହୋଟେଲ' ଆତଙ୍କମୁକ୍ତ ହୋଇଥିଲା । ୧୨ ମାସର ମରାମତି କାର୍ଯ୍ୟରେ ପ୍ରାୟ ୫୦୦ କୋଟି ଟଙ୍କାର ଖର୍ଚ୍ଚ ହୋଇଥିଲା । ଏହି ହୋଟେଲ୍ ପୁଣିଥରେ କାର୍ଯ୍ୟକ୍ଷମ ହେଲା ।

ଏହି ହୋଟେଲର ଭିତରର ସାଜସଜ୍ଜା ଅତି ଉଚ୍ଚକୋଟିର । ଭାରତର ବିଳାସମୟ ହୋଟେଲ ମାନଙ୍କ ମଧ୍ୟରେ ଏହା ଅଗ୍ରଗଣ୍ୟ । ଦେଶ ବିଦେଶର ନେତା, ରାଜନେତା ନିଜର ଭ୍ରମଣ କାଳରେ ଏଠାରେ ରହିଥାନ୍ତି ।

'ଗେଟ୍ ୱେ ଅଫ୍ ଇଣ୍ଡିଆ' ଆଉ 'ତାଜ୍ ମହଲ ହୋଟେଲ୍ ଆଣ୍ଡ୍ ପେଲେସ୍' ମଧ୍ୟରେ ଛତ୍ରପତି ଶିବାଜୀଙ୍କ ଏକ ମୂର୍ତ୍ତି ଶୋଭାପାଉଛି । ତାର ଚତୁଃର୍ପାର୍ଶ୍ୱରେ ଗୋଟିଏ ଫୁଲବଗିଚା ଶୋଭା ପାଉଛି ।

ଏହି ସବୁ ଆମେ ବୁଲି ଦେଖିଲୁ । ବିଭିନ୍ନ ରାଜ୍ୟର ଲୋକ ମାନଙ୍କ ସାଙ୍ଗେ ଭଙ୍ଗାଭାଷାରେ କଥା ହେଲୁ । ଧିରେ ଧିରେ ଗହଳି ବଢୁଥାଏ ସୂର୍ଯ୍ୟାସ୍ତ ପରେ । ଆମର ଫେରିବା ସମୟ ହେଉଥାଏ । ନୂଆଁ ସହର, ଏଣୁ କାଳ ବିଳମ୍ବ ନ କରି ପୁଣି ଚର୍ଚ୍ଚ ଗେଟ୍ ଷ୍ଟେସନକୁ ଫେରି ଆସିଲୁ । ଲୋକାଲ୍ ଟ୍ରେନରେ, ଲୋକ ମାନଙ୍କର ହୋ ହଲ୍ଲା ଭିତରେ ଟ୍ରେନର ଛୁକ ଛୁକ୍ ଶବ୍ଦ ଲୀନ ହୋଇଯାଉଥାଏ ।

ଜଣେ ଭିକାରୀ, ଡ଼ବାଟିଏ ଝଣ ଝଣ କରି ଏପଟ ସେପଟ ହୋଇ ମାଗୁଥାଏ, ଏବଂ ତା'ର ସ୍ୱରରୁ ଭାସି ଆସୁଥାଏ, 'ଏ ମାଲିକ୍ ତେରେ ବନ୍ଦେ ହମ୍...' ।

(କ୍ରମଶଃ)

# ଲୋକେ କହନ୍ତି



ରଞ୍ଜନ କୁମାର ପାଣିଗ୍ରାହୀ

"ଲୋକେ କହନ୍ତି
ତମେ କୁଆଡେ ଦେଖିବାକୁ ଗୋଲାପ ପରି,
ହେଲେ ଗୋଲାପ ପରି
ତମେ ତ କେବେ ମଉଳି ଯିବନି...

ଲୋକେ କହନ୍ତି
ତମେ କୁଆଡେ ଦେଖିବାକୁ ଅପ୍‌ସରୀ ପରି,
ହେଲେ ମୁଁ କହେ ତମେ ଅପ୍‌ସରୀ ପରି ନୁହେଁ
ଅପ୍‌ସରୀ ଦେଖିବାକୁ ତମ ପରି..."

# ଅନ୍ୱେଷଣ



ଆଶାରାଣୀ ବେଉରା

ସେ କେଉଁ ଆଦିମ ଯୁଗରୁ ଏଯାବତ୍
ଅସମାହିତ ପ୍ରଶ୍ନଟିଏ
କୋଽହଂ, କୋଽହଂ
ଏଇ ଅନାହତ ନାଦ
ସୃଷ୍ଟିହୁଏ ଶିଶୁର ପ୍ରଥମ କ୍ରନ୍ଦନରୁ
ଆଉ ତା'ର ଅନ୍ତହୀନ
ଅନ୍ୱେଷଣ ଚାଲିଥାଏ ମାଟିପିଣ୍ଡ ବଡ଼ ହେବାଯାଏଁ

ସମ୍ପର୍କର ସେତୁବନ୍ଧ ଉପରେ ଠିଆହୋଇ
ଦେଖେ ମୁଁ ଯେ ବହୁଧା ବିଭକ୍ତ
କେତେ ରୂପେ କେତେ ନାମେ
ମୋ ସଂସାର ପରିଧି ମଧ୍ୟରେ
ଚିକ୍ ମିକ୍ ରଙ୍ଗମାଖି କରିବାକୁ
ଚମତ୍କାର ଅଭିନୟ ଏ ଦୁନିଆର ରଙ୍ଗମଞ୍ଚ ଉପରେ

ରଙ୍ଗମଞ୍ଚ ପଡୁଛି ଉଚ୍ଛୁଳି
ଅଗଣିତ ଦର୍ଶକଙ୍କ କରତାଳି ଧ୍ୱନୀ
ମୁଁ ରାଜା ଗୋବିନ୍ଦଚନ୍ଦ୍ର
ହୀରା, ନୀଳା, ମାଣିକରେ ମଣ୍ଡଣି ମୋ ରାଜ ଦରବାର
ଅଛନ୍ତି ମୋ ପାତ୍ର ମନ୍ତ୍ରୀ, ଅଛନ୍ତି ମୋ ଅନେଶତ ରାଣୀ
ନାଟକର ଯବନିକା ପଡ଼ିଲା ହଠାତ
କାହିଁଗଲା ରାଜ ସିଂହାସନ ?

କାହିଁଗଲେ ହୀରାବତୀ, ଲୀଳାବତୀ ?

ଅସୁମାରୀ ସୈନ୍ୟ ଆଉ ରାଜ ପାରିଷଦ

ସତେ କ'ଣ ଦୃଶ୍ୟ ସବୁ ଗଲେ ସ୍ମୃତି ହୋଇ

ନିଜକୁ ମୁଁ କରେ ନିରୀକ୍ଷଣ

ମୁଁ ରାଜା ଗୋବିନ୍ଦ ଚନ୍ଦ୍ର ଅବା ଯୋଗୀ ସଂସାର ବିରାଗୀ ?

ମନର କପୋତ ମତେ କରେ ପ୍ରଶ୍ନ ସେଇ ପୁରାତନ

କୋଽଅହଂ, କୋଽଅହଂ ?

କିଏ ବା ଉତ୍ତର ଦେବ ?

ତେତ୍ରିଶ କୋଟି ଦେବତା ବ୍ୟସ୍ତ ଆଜି ଯେ ଯାହା କାମରେ

ଯନ୍ତ୍ରଣାରେ ଜର୍ଜରିତ କୃଶବିଦ୍ଧ ଯୀଶୁ

ଅର୍ଦ୍ଧନିମୀଳିତ ନେତ୍ର ବୁଦ୍ଧଦେବଙ୍କର

କୃଷ୍ଣ ତ ବିଭୋର ଏଠି ରାଧାର ପ୍ରେମରେ

ମହାଯୋଗୀ ଶିବ ଲୀନ ମହା ସମାଧିରେ

ଜଗନ୍ନାଥ ଦାରୁଭୂତ, ଦୁର୍ଗାରତ ମହା ସଂଗ୍ରାମରେ ।

ଏ ଦୁନିଆର କୋଳାହଳମୟ ରାଜରାସ୍ତାପରେ

ମୁଁ ଏକ ନିଃସଙ୍ଗ ପଥିକ

ଖୋଜିବୁଲେ ନିଜ ପରିଚୟ

କିଏ ଯେ ମୁଁ ? ଆତ୍ମା ଅବା କାୟା ?

ହୁଏ ତ ଉତ୍ତର ଏହା

ଯାହା ମୋର ଏକାନ୍ତ ନିଜସ୍ୱ

ବିନ୍ଦୁରୁ ଆରମ୍ଭ ଏବଂ ଶେଷ ମୋର ମୁଠାଏ ପାଉଁଶ ।

# ଓଡ଼ିଆ ସିନେମା ଓ ଦର୍ଶକ



ଡ଼ା ଜ୍ୟୋତି ପ୍ରସାଦ ପଟ୍ଟନାୟକ

ଦର୍ଶକମାନେ ଓଡ଼ିଆ ସିନେମା ଛାଡ଼ି ହିନ୍ଦୀ ସିନେମା ଦେଖିବାପାଇଁ ଆଗ୍ରହ ଦେଖାଉଛନ୍ତି । ଅଧିକ ଦାମ ଦେଲେ ସୁଦ୍ଧା ସେମାନେ ହିନ୍ଦୀ ଦେଖିବା ପାଇଁ ଯେଉଁ ଉତ୍ସାହ ଦେଖାଉଛନ୍ତି ସେଇଥିପାଇଁ ଓଡ଼ିଶାର ସିନେମା ପ୍ରେକ୍ଷାଗୃହମାନେ ମଧ୍ୟ ଓଡ଼ିଆ ତୁଳନାରେ ହିନ୍ଦୀ ଚଳଚ୍ଚିତ୍ର ଅଧିକ ପ୍ରଦର୍ଶନ କରୁଛନ୍ତି ।

ଅଧିକାଂଶ ଓଡ଼ିଆ ଚଳଚ୍ଚିତ୍ର କୌଣସି ସୁପର୍ ହିଟ୍ ହିନ୍ଦୀ କିମ୍ବା ଅନ୍ୟ ଭାଷାଭାଷୀ ଚଳଚ୍ଚିତ୍ରର ଅବିକଳ ନକଲ ହୋଇଥାଉଛି ବୋଲି ଦର୍ଶକ କରୁଥିବା ଯୁକ୍ତି ସମ୍ପୂର୍ଣ୍ଣ ସତ୍ୟ ବୋଲି ଊଣାଧିକେ ସମସ୍ତେ ମତ ଦିଅନ୍ତି । ଓଡ଼ିଆ ଚଳଚ୍ଚିତ୍ରର ଏହି ଦୁରାବସ୍ଥା ପାଇଁ ଦାୟୀ କିଏ ? ଦର୍ଶକଙ୍କ ଅଭାବ, ପ୍ରଯୋଜକମାନଙ୍କ ନକଲ କରିବା ଯୋଜନା, ପ୍ରେକ୍ଷାଗୃହ ଅଭାବ, ସରକାରୀ ପ୍ରୋତ୍ସାହନର ଅଭାବ ନା ଆଉ କିଛି ?

ଜବାବ ଦିଅନ୍ତୁ । ଆପଣ କଣ ଭାବୁଛନ୍ତି ଏହି ବାବଦରେ ...

ବିଗତ ଦୁଇ ଦଶନ୍ଧିରେ ଓଡ଼ିଆ ସିନେମାରେ ଅନେକ ପରିବର୍ତ୍ତନ ଆସିଛି । ପୂର୍ବରୁ ନିଚ୍ଛକ ଓଡ଼ିଆ ପରିବାରର କାହାଣୀକୁ ନେଇ ହେଉଥିବା ସିନେମା ଏବେ ପଟ୍ଟ ପରିବର୍ତ୍ତନ କରି ପ୍ରେମକାହାଣୀ, ହିଂସା ଓ ଅପରାଧ ଆଦି ଅନେକ ତତ୍ତ୍ୱ ଉପରେ ପର୍ଯ୍ୟବେଶିତ ହେଲାଣି । ତଥାପି ଓଡ଼ିଆ ସିନେମା ଦର୍ଶକ ମାନଙ୍କୁ ଧରି ରଖିବାରେ ସକ୍ଷମ ହେଉନାହିଁ ବୋଲି ଅନେକ ଚିନ୍ତାବ୍ୟକ୍ତ କରୁଛନ୍ତି । ଏହିପରି ସ୍ଥଳେ ପ୍ରତିବର୍ଷ ଅସଂଖ୍ୟ ଓଡ଼ିଆ ଚଳଚ୍ଚିତ୍ରର ନିର୍ମାଣ ହେଉଛି ମଧ୍ୟ । ଏ ସବୁ କିପରି ସମ୍ଭବ ହେଉଛି ?

ଓଡ଼ିଆ ଚଳଚ୍ଚିତ୍ର କହିଲେ ମୋତେ ମନେ ପଡ଼େ ଅନେକ ନାଁ ଯେପରି, ଧରିତ୍ରୀ, ନୁଆବୋଉ, ମଲାଜହ୍ନ, ପୁନର୍ମିଳନ, ଡ଼ୋରୀ, ହୀରାନୀଳା, ହିସାବ୍ ନିକାଶ, ପକାକମ୍ବଳ ପୋତ ଛତା, ଚକା ଆଖି ସବୁ ଦେଖୁଛି, ଜୋର ଯାର୍ ମୁଲକ୍ ତାର, ପରଝିଅ ଘର ଭାଙ୍ଗେନା, ଏଇ ଆମ ସଂସାର ଆଉ ଅନେକ କିଛି । ହେଲେ ବିଗତ ଦୁଇ ଦଶନ୍ଧି ଭିତରେ ନିର୍ମିତ କୌଣସି ଚଳଚ୍ଚିତ୍ର ମୋର ମନରେ ହଠାତ୍ ଆସେ ନାହିଁ । ଏହାର ଅନେକ କାରଣ ରହିଛି, ତା ଭିତରୁ ଗୋଟିଏ ପ୍ରମୁଖ କାରଣ ହେଲା ମୁଁ ଓଡ଼ିଆ ସିନେମା

ପ୍ରାୟ ଦେଖୁନାହିଁ । ଶେଷଥର ଛଅ ଶ୍ରେଣୀରେ ପାଠ ପଢ଼ିଲା ବେଳେ ବୋଧହୁଏ ଦେଖିଥିଲି ଯାହାକୁ ରଖିବେ ଅନନ୍ତ, ଏହା ପରେ ଆଉ କୌଣସି ସେହିପରି ମଉକା ମିଳିଲା ନାହିଁ । ପାଠ ପଢ଼ା ଭିତରେ ସିନେମା ଦେଖା ସମ୍ଭବ ହେଇନଥିଲା, ଆଉ ଯେତେବେଳେ ସମ୍ଭବ ହେଉଥିଲା ସେତେବେଳେ ହିନ୍ଦୀ ଆଉ ଇଂରାଜୀ ସିନେମା ଦେଖିବାରେ ମନ ବଳିଲା । ହେଲେ ନିଜ ମାତୃଭାଷା ଓଡ଼ିଆରେ ସିନେମା ଦେଖିବାକୁ ଇଚ୍ଛା ହେଲା ନାହିଁ କାହିଁକି ? ଏହାର ବି ଅନେକ କାରଣ ରହିଛି ।

ମନୋରଞ୍ଜନ ପାଇଁ ସିନେମା ଦେଖିବା । ହେଲେ ଯଦି ସବୁ ସିନେମାରେ ସେଇ ଏକା ଭଙ୍ଗାଘର, ପୁରୁଣା ଗାଡ଼ି ଆଉ ସେଇ ହାତମୁଠାରେ ଥିବା କଳାକାରଙ୍କୁ ଦେଖିବା ସିନେମା ଦେଖିବାର ମଜା ଆସିବ କେମିତି । ଯିଏ ଏହି ସିନେମାରେ ହିରୋ ଅନ୍ୟଟିରେ ସେ ହିଁ ଭିଲେନ୍ । ଊଣାଅଧିକେ ସବୁ ସିନେମାରେ ଏକ ଡ଼ଜନରୁ ଅଧିକ କଳାକାର, ସେମାନଙ୍କ ଭିତରେ ସମ୍ପର୍କ କଣ ବୁଝୁ ବୁଝୁ ସିନେମା ଅଧା ସରିଯିବଣି । ସବୁ ସିନେମାରେ ପ୍ରାୟ ପ୍ରାୟ ସେହି ଏକା ସମାନ ପରିସ୍ଥିତି, ସବୁଠି ଖାଲି କାନ୍ଦ ଆଉ ଦୁଃଖ, ସତେ ଯେମିତି ଆମ କାହାଣୀକାର ମାନେ ହସ ବା ବ୍ୟଙ୍ଗକୁ ପରିତ୍ୟାଗ କରିଦେଇଛନ୍ତି । ଆଉ ବ୍ୟଙ୍ଗ ନାଁରେ ସିନେମାରେ ଯାହା ଦେଖାଯିବ ସେ ହେଉଛନ୍ତି ମୁଠାଏ କିମ୍ଭୁତକିମ୍ଭାକାର ଚରିତ୍ର, ଆଉ ସେମାନଙ୍କ ସମପରିମାଣର ଅସହ୍ୟ ହସ । ଶାରିରୀକ ଗଠନକୁ ବ୍ୟଙ୍ଗ ରୂପରେ ଦେଖାଇବାର ପ୍ରୟାସରେ କେବଳ କେଇ ଜଣ ହିଁ ଏହି ସବୁ ସିନେମାରେ ଦେଖା ଦେଉଥିଲେ । କାହାଣୀରେ ନା ଥିଲା ମୌଳିକତା ଆଉ ନା ନୁତନତା । ରୋଗୀ ମା ବାପା, ଗରୀବ ପରିବାର, ବିବାହ ପାଇଁ ଅର୍ଥାଭାବ, ଇତ୍ୟାଦି ଇତ୍ୟାଦି । ସବୁ ସିନେମାରେ ଗୋଟିଏ ଗୋଟିଏ ଭିଲେନ୍ ଯିଏ ପୁରା ସିନେମା ହିରୋ ସହ ଛକାପଞ୍ଝା ଲାଗିଥିବ । ଆଉ ସେ ସବୁ ଭିଲେନ୍ ମାନଙ୍କ ଅସହ୍ୟ ବେଶପୋଷାକ ପରିପାଟୀ । ଏହି ସବୁ ଜିନିଷ ଦେଖିବାପରେ ଓଡ଼ିଆ ସିନେମା ପ୍ରତି ଏକ ବିତୃଷ୍ଣା ଭାବ ଆପେ ଆପେ ଜାଗ୍ରତ ହୋଇଗଲା ।

ଏହି ସମୟରେ ହିନ୍ଦୀ ସିନେମାରେ ନୂଆ ନୂଆ କଳାକାର, ସୁମଧୁର ସଂଗୀତ, ସୁନ୍ଦର ଚିତ୍ରୋତ୍ତଳନ, ଅଭିନୟ ଦେଖି ଆମେ ହିନ୍ଦୀ ସିନେମା ପ୍ରତି ଆକୃଷ୍ଟ ହେବା ସ୍ୱାଭାବିକ ଥିଲା ।

# ମୁକ୍ତି ସଂଗୀତ



ଶଙ୍କର ପରିଡ଼ା

ଝର୍କା ରେଲିଂ ଡେ଼ଇଁ
ଅନ୍ଧାରର ଚଟାଣ ଉପରେ
କୁଦା ମାରିବ ଲାଲେଲାଲ୍
ଲୋହିତ ସକାଳ
ସିନ୍ଦୁରା ଚହଟିଯିବ
ବର୍ଷିୟସୀ ବିଧବା କପାଳ ।
ହୁସିଆର୍ । ବେଳ ଆଖର ପାଖର
ଏବେ ସଜ ହୁଅ
ସବୁ ବନ୍ଧ୍ୟାଙ୍କ ଜରାୟୁରେ
କରିଦେବି ଅଷ୍ଟମ ଗର୍ଭ
ଅନାଗତ ସକାଳର ମୁକ୍ତି ଲୋଡି
ଶୁଣିବକି ?
ଲେଖୁଛି ଯା ସନ୍ନ୍ୟାସୀ ସନ୍ଦର୍ଭ ।
ଯିଏ ଯୋଉଠି ଅଛ
ବନ୍ଦୀ ଓ ବନ୍ଧ୍ୟା
ସ୍ମରିଯାଅ ଶବ୍ଦର ଈଶ୍ୱର
ସୀମା ଲଂଘି ପହଞ୍ଚିଛି
ହାତ ମୋର ହତିଆର
ଶବ୍ଦ ମୋର ଗୁଳି
ଛୁଇଁଗଲେ ଛାଏଁ ଛାଏଁ
ଖୋଲିଯିବ କଡ଼ି ବେଡ଼ି
ଛାଏଁ ଛାଏଁ ଖୋଲିବ ଶାଂକୁଳି
ଅସୂର୍ଯ୍ୟ ଏ ଇଲାକାକୁ
ନିକଟେଇ ଦେବି ଆଜି
ତାରାଙ୍କ ଆଲୋକେ
ମୁକ୍ତିର ମହା ସଂଗୀତେ
କମ୍ପିଯିବ ଭୂଲୋକ ଦ୍ୟୁଲୋକ ।



# ନାରୀ ନିର୍ଯାତନା

ବନ୍ଦନା ପଣ୍ଡା

ହୃଦୟର ଗଭୀରତା ଭିତରେ କିଛି ବେଦନା

କହି ନ ପାରି ଖାଲି ହୁଏ ଛଟପଟ

ଆଖିର ଲୁହ ନ ଦିଶେ କାହାକୁ

ନ ମିଳଇ କାହାଠାରୁ କିଛି ସାନ୍ତ୍ୱନା କି ସମବେଦନା ॥

ଝିଅଟିଏ ବୋଲି ଆଜି ଯନ୍ତ୍ରଣା ମୋ ଭାଗ୍ୟ

ଦୁଃଖ ମୋ ଜୀଅନ, ନିଃସଙ୍ଗତା ମୋ ପ୍ରେମିକ

କଲମ ମୋ ପ୍ରିୟ ବନ୍ଧୁ, କ୍ଲାନ୍ତି ମୋ ଚିର ସହଚର

ଏସବୁ ଭିତରେ ବି ମୁଁ ବଞ୍ଚିଛି ଆଜି

ନିଃଶବ୍ଦ ଏହି ପୃଥିବୀ ଭିତରେ ଆଦରି ମୋ ଭାଗ୍ୟକୁ ॥

ସମାଜରେ ଏହି ପଶୁ ସମାନ ରାକ୍ଷସ

ଲୋଭ ରଖିଛି କେବଳ ଅର୍ଥ ଆଉ ନାରୀ ସୌନ୍ଦର୍ଯ୍ୟକୁ

ଭୁଲିଯାଇଛି ସେ ନାରୀ ରୂପୀ ନାରାୟଣୀ, ଦୁର୍ଗା, ଚଣ୍ଡୀ, କାତ୍ୟାୟନୀଙ୍କୁ

ଯାହାଙ୍କ ସୃଷ୍ଟିରେ ସେ ଦିନେ ହୋଇଥିଲା ସୃଷ୍ଟ ॥

ଶାରୀରିକ ମାନସିକ ଓ ପାଶବିକ ଅତ୍ୟାଚାର ବଶବର୍ତ୍ତୀ ନାରୀ

ଦୁର୍ବଳ ଉପରେ ସବଳର ପ୍ରଭୁତ୍ୱ

ନିଜକୁ ଜାଳି ଜାଳି ଅନ୍ୟକୁ ଆଲୋକିତ କରେ

ନୂଆ ସକାଳରେ ନୂଆ ସ୍ୱପ୍ନ ଦେଖାଏ ସେ ନାରୀ ॥

ସେ ଦିନେ ଥିଲା ଇନ୍ଦ୍ରଧନୁର ସାତରଙ୍ଗ

କବିର କଳ୍ପନା, ଝରଣାର ଶୀତଳ ଧାରା

ଦିନ ପରେ ଦିନ ବିତିଗଲା ସିନା

ନ ବୁଝିଲେ କେବେ କେହି ନାରୀର ଅସ୍ତିତ୍ୱ ବା ନାରୀର ବେଦନା ॥

କଷ୍ଟ ସହିବା ତାହାରି ଧର୍ମ

ଗୁରୁଜନ ସେବା ତାହାରି କର୍ତ୍ତବ୍ୟ

ସମ୍ପର୍କକୁ ଯୋଡ଼ି ଯୋଡ଼ି ଘରଟିଏ କରିଛି

ସେହି ଘରେ ପୁଣି ସେ ଚାକରାଣି ସାଜିଛି ॥

ଅପରିବ୍ୟକ୍ତ ସେ ନାରୀର ବର୍ଣ୍ଣନା

ନ ଲିଭିବ କେବେ ନାରୀ ନିର୍ଯ୍ୟାତନା

ସମୟ ଆସିବ ଦିନେ ନ କରିବେ କେହି ଝିଅଟିକୁ ଜନ୍ମ

ସେହି ଝିଅ ଦିନେ ବିନାଶ କରିବ ସବୁ ମଣିଷର ଅପକର୍ମ ॥

ନାରୀ ଜନ୍ମଦାତ୍ରୀ, ସେ ପୁଣି ସଂହାରକାରିଣୀ

ସମ୍ପୂର୍ଣ୍ଣଭାବରେ ଗୃହଲକ୍ଷ୍ମୀ ପୁଣି

ସମ୍ପୂର୍ଣ୍ଣକୁ ସମ୍ପୂର୍ଣ୍ଣ କରେ ସେ ସମ୍ପୂର୍ଣ୍ଣା

ନ ଦେବ କେବେ ନାରୀ ନିର୍ଯ୍ୟାତନା, ନାରୀ ନିର୍ଯ୍ୟାତନା... ॥



# ଅନ୍ଧବିଶ୍ୱାସର ହେତୁ

ବାଲ୍ମୀକି ନାୟକ

ଭାରତୀୟ ସମାଜରୁ ଅନ୍ଧବିଶ୍ୱାସ ଦୂର କରିବାକୁ ହେଲେ ସର୍ବପ୍ରଥମେ ଆମେ ତଥାକଥିତ ଧର୍ମଗୁରୁ, ଭଣ୍ଡବାବା ଓ ତାନ୍ତ୍ରିକ ମାନଙ୍କର ମୁଖା ଖୋଲି ସେମାନଙ୍କର ଅସଲି ଚେହେରା ସମାଜକୁ ଦେଖାଇବାକୁ ପଡ଼ିବ। ଅସଲ ସମସ୍ୟା ହେଉଛି ଯେ ଏହି କାମ କରିବ କିଏ ? ପୁରା ସମାଜର ଲୋକମାନେ ଯଦି ଏହି ମାନଙ୍କର ମାୟାଜାଲରେ ବନ୍ଧା ପଡ଼ିଛନ୍ତି ତେବେ ସେମାନଙ୍କୁ ବିରୋଧ କରିବ କିଏ ? କେହି କେହି ଏହାର ବିରୋଧ କରିବାକୁ ଚାହିଁଲେ ବି ସମାଜର ଭୟରେ ସେମାନେ ଚୁପ୍ ରହିବାକୁ ବାଧ୍ୟ ହେଉଛନ୍ତି। କାରଣ ସେମାନଙ୍କ ସଂଖ୍ୟା ନଗଣ୍ୟ। ହେତୁବାଦ ଉପରେ ଚର୍ଚ୍ଚା କରୁଥିବା ବ୍ୟକ୍ତିକୁ ସମାଜ 'ନାସ୍ତିକ' କହି ଅପନିନ୍ଦା କରିଥାଏ। ଅତୀତରେ ବିଦେଶରେ ଅନେକ ବୁଦ୍ଧିଜୀବି ହେତୁବାଦୀ ଏଇଥିପାଇଁ ଧର୍ମଗୁରୁ ମାନଙ୍କ ଦ୍ୱାରା କଠୋର ନିର୍ଯ୍ୟାତନା ଭୋଗ କରିଛନ୍ତି ଏବଂ ମୃତ୍ୟୁବରଣ କରିଛନ୍ତି। ବର୍ତ୍ତମାନ ସମୟ ବଦଳିଛି ତେଣୁ ଆମର ଶିକ୍ଷିତ ଯୁବବର୍ଗ ନିଜର ବୈଜ୍ଞାନିକ ଚିନ୍ତନ ସାହାଯ୍ୟରେ ତର୍କ ପ୍ରସ୍ତୁତ କରି ନିଜର ତଥା ପରିବାରର ଅନ୍ୟ ସଦସ୍ୟ ମାନଙ୍କର ମନରୁ ଅନ୍ଧବିଶ୍ୱାସଗୁଡ଼ିକୁ ଦୂର କରିବାପାଇଁ ପ୍ରୟାସ କରିବା ଉଚିତ। ତେବେ ଯାଇ ସମାଜରୁ ଅନ୍ଧବିଶ୍ୱାସ ଦୂର ହୋଇ ପାରିବ।

ଆମର ଜେଜେମାଆ ଓ ଆଇମାଆ କାଳରେ ଅନେକ ପ୍ରକାର ଭ୍ରାନ୍ତି ପ୍ରଚଳିତ ଥିଲା। ଯଥା – 'କ' ଲୋକଟି 'ଖ' ଲୋକକୁ କିଛି ଖୁଆଇ ଦେବାରୁ 'ଖ' ଲୋକଟି 'କ' ଲୋକର ଇଚ୍ଛାନୁସାରେ କାମ କଲା। ଜଣେ ଗୁଣିଆ ଶ୍ମଶାନରୁ ପାଉଁଶ ଆଣି ଅମୁକ ଲୋକ ଉପରେ ଫିଙ୍ଗିଦେବାରୁ ସେ ରୋଗରେ ପଡ଼ି ଘାଣ୍ଟି ହେଉଛି। କାହାର କୁଦୃଷ୍ଟି ପଡ଼ିଯିବାରୁ ଅମୁକ ବ୍ୟକ୍ତିର ବ୍ୟବସାୟ ମାନ୍ଦା ହୋଇଗଲା। କୁଦୃଷ୍ଟି ଯୋଗୁଁ ଛୁଆମାନେ ଅସୁସ୍ଥ ହୋଇଯାଆନ୍ତି। ମନ୍ତ୍ରତନ୍ତ୍ର କରି କେହି କୌଣସି ଗାଇର ଦୁଗ୍ଧ ଉତ୍ପାଦନକୁ କମ କରିଦେଲା ବା ବନ୍ଦ କରିଦେଲା ରାତିରେ ଘର ଚାଳ ଉପରେ ପେଚାବସି ରାବ ଦେବାର ଅର୍ଥ ସେ ଘରୁ କେହି ମୃତ୍ୟୁବରଣ କରିପାରନ୍ତି। ଘରୁ କୌଣସି ଶୁଭକାର୍ଯ୍ୟରେ ବାହାରକୁ ଯାଉଥିବା ବ୍ୟକ୍ତି ଯଦି ବିଧବା ସ୍ତ୍ରୀ, ନଣ୍ଡାମୁଣ୍ଡିଆ ମଣିଷ, କିଛି ଶୁଦ୍ରଜାତିର ଲୋକ ଓ ଖାଲି ମାଠିଆ ଆଦି ଦର୍ଶନ କଲେ ତାଙ୍କର କର୍ମଟି ସଫଳ ନ ହୋଇପାରେ। ଘର

ଭିତରେ ରହୁଥିବା ଝିଟିପିଟି ମଣିଷର ବିଭିନ୍ନ ଅଙ୍ଗରେ ଖସି ପଡ଼ିଲେ ବିଭିନ୍ନ ପ୍ରକାରର ଶୁଭ ଅଶୁଭ ଲକ୍ଷଣ ପ୍ରକାଶ ପାଏ । ପୂଜା, ପାର୍ବଣରେ ଓଡ଼ିଶାର ଗାଁ ଗହଳିରେ ଆରିଷା ଓ କାକରା ପିଠା ତିଆରି କରିବାପାଇଁ ଅରୁଆ ଚାଉଳର ଚୁନା ଢେଙ୍କିରେ କୁଟି ପ୍ରସ୍ତୁତ କରାଯାଏ । ଏହି ଚୁନା ପ୍ରସ୍ତୁତି କରିବା ସମୟରେ କିମ୍ବା ପିଠା ପାଇଁ ଜନ୍ତୁଣି ପ୍ରସ୍ତୁତ ସମୟରେ ଘର ବାହାରର କୌଣସି ଲୋକଙ୍କ ଦୃଷ୍ଟି ପଡ଼ିବା ଉଚିତ ନୁହେଁ । କାରଣ ଭଲ ପିଠା ତିଆରି ହେବ ନାହିଁ । ଯଦିଓ ଅସଲ ବୈଜ୍ଞାନିକ କାରଣ ହେଉଛି ପିଠା ତିଆରିପାଇଁ ବ୍ୟବହୃତ ବସ୍ତୁ ଗୁଡ଼ିକର ଗୁଣବତ୍ତା, ଭାଗ ଓ ମାପ, ପିଠା ତିଆରି କରୁଥିବା ବ୍ୟକ୍ତିର ଅନୁଭବ ଓ ଶୈଳୀ ଠିକ୍ ନଥିଲେ ସୁସ୍ୱାଦୁ ପିଠା ତିଆରି ହୋଇ ପାରିବନି । ଉପରୋକ୍ତ ସମସ୍ତ ତଥ୍ୟ ଠିକ୍ ଥାଇ ହଜାର ହଜାର ଲୋକମାନଙ୍କ ଦୃଷ୍ଟି ସାମନାରେ ପିଠା ତିଆରି କଲେ ବି ଅସ୍ୱାଦ ହେବନି, ସୁସ୍ୱାଦୁ ହିଁ ହେବ ।

ସେହି ସମୟରେ ଯୋଗକୁ ରଜସ୍ୱଳା ହୋଇଥିବା ସ୍ତ୍ରୀମାନଙ୍କୁ ସମ୍ପୂର୍ଣ୍ଣ ରୂପେ ଏଥିରେ ଭାଗ ନେବାପାଇଁ ବାରଣ କରାଯାଇଥାଏ । ରଜସ୍ୱଳା ସମୟରେ ସ୍ତ୍ରୀମାନେ ଶାରୀରିକ ଭାବରେ ଅସୁସ୍ଥ ରହନ୍ତି ବୋଲି ଏକ ମିଥ୍ୟା ବିଶ୍ୱାସ ରହିଛି । ସେମାନେ ଯଦି ପରିଷ୍କାର ପରିଚ୍ଛନ୍ନତା ପ୍ରତି ଧ୍ୟାନ ନ ଦିଅନ୍ତି ତେବେ ସ୍ୱାସ୍ଥ୍ୟ ବିଜ୍ଞାନ ଦୃଷ୍ଟିରୁ ସେମାନେ ରୋଷେଇଘରୁ ଦୂରେଇ ରହିବା ତର୍କଟି ଠିକ୍ ବୋଲି କହିବା କିନ୍ତୁ ଆଜିର ଶିକ୍ଷିତା ନାରୀ ଯଦି ସେହି ସମୟରେ ଉପଯୁକ୍ତ ସତର୍କତା ଅବଲମ୍ବନ କରି ଶାରୀରିକ ଭାବେ ପରିଷ୍କାର ରହିବା ଭଲ ଭାବରେ ପାଳନ କରୁଛି, ସେ କାହିଁକି ରକ୍ଷଣଶୀଳ ବିଚାର ଯୋଗୁଁ ପୂଜାପାର୍ବଣରେ ଭାଗ ନେଇ ପାରିବ ନାହିଁ ? ଆଜି ପାଠ ପଢୁଥିବା ଓ ଚାକିରୀ କରୁଥିବା ଯୁବତୀମାନଙ୍କୁ ପ୍ରତିମାସରେ ଚାରି ପାଞ୍ଚଦିନ ଘର କୋଣରେ ଲୁଚି ରହିବାକୁ ସମୟ କାହିଁ ? ଆଜିର ଛୋଟ ପରିବାର ଭିତରେ ରହୁଥିବା ଏକମାତ୍ର ସ୍ତ୍ରୀ ପ୍ରତିମାସରେ ଚାରିପାଞ୍ଚଦିନ ରୋଷେଇଘରୁ ଦୂରେଇ ରହିଲେ ତାଙ୍କର ଚାକିରୀ କରୁଥିବା ସ୍ୱାମୀ ଓ ସ୍କୁଲରେ ପଢୁଥିବା ପିଲାମାନେ ଖାଇବେ କେମିତି ? ମୂଳ କଥା ହେଉଛି ଯେ ନାରୀପାଇଁ ଏହା ଏକ ପ୍ରାକୃତିକ କ୍ରିୟା । ଏଥିରେ ଦୋଷ ବାଛିବା ହିଁ ଏକ ମହାନ ଦୋଷ । ରଜସ୍ୱଳା ନ ହେଲେ ତ ଜଣେ ନାରୀ ବନ୍ଧ୍ୟା ଦୋଷରେ ନିନ୍ଦିତ ହୋଇଥାଏ । ସେ ମାତୃତ୍ୱର ଗୌରବ ବି ପାଇବ ନାହିଁ ।

ଅନ୍ଧବିଶ୍ୱାସକୁ ବୃଦ୍ଧି କରୁଥିବା ଅନେକ କାରଣ ଭିତରୁ ଆମ ଘର ମାନଙ୍କରେ

ଲାଗିଥିବା କେବୁଲ୍ ଟିଭିରେ ପ୍ରସାରିତ ହେଉଥିବା ଅବୈଜ୍ଞାନିକ, ଅବିଶ୍ୱସନୀୟ ଘଟଣା ଓ କାହାଣୀ ବି ଅନେକ ପରିମାଣରେ ଦାୟୀ । ଘର କରଣା କାମ ସବୁ ଚାକର ଚାକରାଣୀ ହାତରେ ଟେକିଦେଇ ଅଧିକରୁ ଅଧିକ ସମୟ ସ୍ତ୍ରୀଲୋକମାନେ ଟିଭି (ଇଡ଼ିୟଟ୍ ବକ୍ସ୍) ସାମନାରେ ବସି ରହନ୍ତି । ଯେଉଁଠି ଶାଶୁବୋହୁଙ୍କ ଭିତରେ ଚାଲୁଥିବା ବାକ୍ ଯୁଦ୍ଧ, ଭୂତପ୍ରେତ ମୂଳକ କାଳ୍ପନିକ ଗାଲୁଗପ (ସତ୍ୟ କାହାଣୀ ଉପରେ ଆଧାରିତ ବୋଲି କହି), ସାଧୁ ସନ୍ୟାସୀ ମାନଙ୍କ 'ବ୍ରହ୍ମସତ୍ୟ, ଜଗତମାୟା' ରୂପକ ପ୍ରବଚନ, କେଉଁଠି ସମୁଦ୍ରପାଣି ମିଠା ଲାଗିବା ଘଟଣା, କୌଣସି ନିମ ଗଛରୁ ଦୁଧ ନିର୍ଗତ ହେବାର ଅବୈଜ୍ଞାନିକ ଦୃଶ୍ୟ, ଗଣେଶ ମୂର୍ତ୍ତି ଦୁଧ ପିଉଥିବାର ଗୁଜବ ପ୍ରଚାର ହୋଇଥାଏ । ଦର୍ଶକ ଉପରୋକ୍ତ କାହାଣୀମାନଙ୍କର ପାତ୍ର ମାନଙ୍କ ସହିତ ମାନସିକ ସ୍ତରରେ ଯୋଡ଼ିହୋଇ ଯାଆନ୍ତି । ଦର୍ଶକ ନିଜର ପିଲାବେଳରେ ଶୁଣିଥିବା ଭୂତପ୍ରେତ କିମ୍ବା ଚମତ୍କାରୀ କାହାଣୀକୁ ଭୁଲିଯାଇଥାନ୍ତି କିନ୍ତୁ ଟିଭି ପରଦାରେ ସେହିଭଳି ଦୃଶ୍ୟଦେଖି ପୁଣିଥରେ ମନେ ପକାଇବାକୁ ବାଧ୍ୟ ହୋଇଥାନ୍ତି । ଅନେକ ଲୋକ ପୂର୍ବରୁ ଶୁଣିଥିବା କଥାକୁ ଅବିଶ୍ୱାସ କରୁଥିଲେ ବି ପୁଣିଥରେ ଏହି ଦୃଶ୍ୟଦେଖି ବିଶ୍ୱାସ କରିବା ଆରମ୍ଭ କରିଦିଅନ୍ତି । ବିଭିନ୍ନ ସମସ୍ୟାର ଆଶୁ ସମାଧାନ ପାଇଁ ଲୋକମାନେ ଦୌଡ଼ିଥାନ୍ତି ଟିଭିରେ ପ୍ରସାରିତ ହୋଇଥିବା ବାବା, ମାତା, ତାନ୍ତ୍ରିକ ଓ ଜ୍ୟୋତିଷମାନଙ୍କ ପାଖକୁ । ଧନବୃଦ୍ଧି, ସମ୍ମାନବୃଦ୍ଧି, ଚାକିରୀରେ ପଦୋନ୍ନତି, ପରୀକ୍ଷାରେ ସଫଳତା ପାଇବା ଆଶାରେ ବିଭିନ୍ନ ଅବୈଜ୍ଞାନିକ ଉପାୟମାନ ଅବଲମ୍ବନ କରିଥାନ୍ତି । ତାନ୍ତ୍ରିକ ଓ ଜ୍ୟୋତିଷ ମାନଙ୍କ ପ୍ରରୋଚନାରେ ଆଙ୍ଗୁଠିରେ ପିନ୍ଧିବା ପାଇଁ ଦାମୀ ପଥରବସା ମୁଦି, ଦେହରେ ପିନ୍ଧିବା ପାଇଁ ତାବିଜ ବା ଡେ଼ଉଁରିଆ, ଘରେ ରଖିବା ପାଇଁ ବିଭିନ୍ନ ପ୍ରକାରର ଯନ୍ତ୍ର, ଲାଫିଙ୍ଗ୍ ବୁଦ୍ଧା, ବେଙ୍ଗ, କଇଁଛ ମୂର୍ତ୍ତି ଆଦି କିଣିଥାନ୍ତି । ବ୍ୟକ୍ତିଗତ ଭାବେ ଏମାନେ କିଏ କେତେ ଲାଭବାନ ହୁଅନ୍ତି, ସେକଥା ସେହି ମାନେ ହିଁ କହି ପାରିବେ କିନ୍ତୁ ପଥର, ମୁଦି, ତାଇଜ ବିକ୍ରୀ କରୁଥିବା ସଂସ୍ଥାମାନେ କୋଟିପତି ହୋଇଯାଉଛନ୍ତି ଏଥିରେ ସନ୍ଦେହ ନାହିଁ । ମଜାକଥା ହେଉଛି ଯେ - ଚୋର ମା' ଦୁଆର କିଳି କାନ୍ଦିବା ଭଳି ମହଙ୍ଗା ଦାମରେ କିଣିଥିବା ମୁଦିଟି ପିନ୍ଧିବାପରେ ବି ଯଦି ମନୋବାଞ୍ଛିତ ଫଳ ନ ପାଏ ତାହେଲେ ବି ସେ କାହାରିକୁ ଉକ୍ତ ମୁଦିର କୌଣସି ଚମତ୍କାରିକ ଶକ୍ତି ନଥିବା କଥା କହିବ ନାହିଁ କିମ୍ବା ତାକୁ ଠକିଦେଇଥିବା ବ୍ୟକ୍ତିକୁ ନିନ୍ଦା ବି କରିବ ନାହିଁ ।

# ଅନ୍ଧବିଶ୍ୱାସରୁ ମୁକ୍ତି ପାଇବାର ଉପାୟ : -

ବାବା, ତାନ୍ତ୍ରିକ ଓ ଜ୍ୟୋତିଷମାନଙ୍କ ମାୟାଜାଲରେ ପଡ଼ିବା ଅପେକ୍ଷା ସେମାନଙ୍କଠାରୁ ନିଜକୁ ଦୂରେଇ ରଖିବାର ଉପାୟ ହେଉଛି - ଜ୍ଞାନବର୍ଦ୍ଧକ ପୁସ୍ତକ ପାଠ କରନ୍ତୁ । ବୁଦ୍ଧିମାନ ବ୍ୟକ୍ତିମାନଙ୍କ ସହ ବିଚାର ବିମର୍ଶ କରି ନିଜ ସମସ୍ୟାର ସମାଧାନ ଖୋଜନ୍ତୁ । ଯେତେବେଳ ଯାଏଁ ଆପଣଙ୍କ ଆଶଂକା ଦୂର ନ ହୋଇଛି ସେତେବେଳ ଯାଏଁ ନିରାଶ ହୁଅନ୍ତୁ ନାହିଁ । ଆଶାବାଦୀ ହୁଅନ୍ତୁ । ମାନସିକ ଦୁଶ୍ଚିନ୍ତାରୁ ମୁକ୍ତି ପାଇବା ପାଇଁ ଆବଶ୍ୟକ ସ୍ଥଳେ କୌଣସି ମନୋବୈଜ୍ଞାନିକଙ୍କ ସାହାଯ୍ୟ ନିଅନ୍ତୁ । ସେ ଆପଣଙ୍କ ମନରେ ଗଣ୍ଠିବାନ୍ଧିଥିବା ଭୁଲ ଧାରଣାକୁ ସହଜ ଭାବରେ ବୁଝେଇ ଦୂର କରି ଦେଇ ପାରିବେ । ଆଜିକାଲି ବିଭିନ୍ନ ବଡ଼ ବଡ଼ ଡ଼ାକ୍ତରଖାନାରେ ଅତି ଆଧୁନିକ ବୈଜ୍ଞାନିକ ଯନ୍ତ୍ରପାତି ସହିତ ଉଚ୍ଚଶିକ୍ଷିତ ମନୋବୈଜ୍ଞାନିକ ବା ମନସ୍ତାତ୍ତ୍ୱିକ ମାନେ ଅଛନ୍ତି । ସେମାନେ ବୈଜ୍ଞାନିକ ଚିକିତ୍ସା ପଦ୍ଧତିରେ ଆପଣଙ୍କ ମନରେ ଉପୁଜିଥିବା ଅହେତୁକ ଭ୍ରମ ଓ ଭୟକୁ ଦୂର କରି ଏକ ସୁସ୍ଥ ଓ ସାଧାରଣ ମଣିଷରେ ପରିଣତ କରି ଦେଇପାରିବେ । ମାନସିକ ଭାବରେ ସୁସ୍ଥ ଥିବା ବ୍ୟକ୍ତିର ଆତ୍ମବିଶ୍ୱାସ ଦୃଢ଼ ରହିଥାଏ । ସେଇଥିପାଇଁ ସେ ନିଜ ସମସ୍ୟାର ସମାଧାନ ସହଜରେ ଖୋଜି ପାଇଥାଏ । ତଥାକଥିତ ବାବା, ତାନ୍ତ୍ରିକ, ଜ୍ୟୋତିଷ ଓ ଧର୍ମଗୁରୁ ମାନଙ୍କର କପୋଳକଳ୍ପିତ ଅବଧାରଣା ଓ ଅବୈଜ୍ଞାନିକ ପଦ୍ଧତିରେ ସମସ୍ୟାର ସମାଧାନ ହୋଇ ନଥାଏ ବରଂ ନୂଆ କିଛି ସମସ୍ୟା ସୃଷ୍ଟି ହେବାର ଭୟ ଥାଏ । ଆମକୁ ସାବଧାନ ରହିବା ଉଚିତ ।

# ମନେପଡ଼



ଦିପ୍ତିରଞ୍ଜନ ବେହେରା

ତୁମକୁ କେତେ ମୁଁ ଭଲ ପାଉଅଛି ତାହାତ ତୁମେ ଜାଣିଛ
ତଥାପି କେମିତି ଅଧା ବାଟେ ଛାଡି ଚାଲିଯେ ମୋତେ ଯାଇଛ !!

ବାଟ ଭୁଲି ମୁଁଯେ ତୁମକୁ ଖୋଜୁଛି ପାଇବା ପାଇଁ କି ସତେ
ଅବାଟରେ କେତେ କଣ୍ଟା ଯେ ଫୁଟୁଛି ତାହା ଏକା ଜଣା ମୋତେ !!

କଣ୍ଟାର ଯନ୍ତ୍ରଣା ସହି ମୁଁ ଯାଉଛି କେବଳ ତୁମରି ପାଇଁ
ଏତିକି ଭରସା ମନରେ ରଖିଛି ଆସିବ ତୁମେ ଯେ ଧାଇଁ !!

ଭରସାରେ ବିଷ ତୁମେ ଯେ ଦେଇଛ ସହି ନ ପାରଇ ଆଉ
ଚାହିଁ ରହିଥିବି ଖୋଜି ବୁଲୁଥିବି ଯେତେ ଯୁଗ ଗଲେ ଯାଉ
... ଯେତେ ଯୁଗ ଗଲେ ଯାଉ !!

# ରାମଭକ୍ତ



ଉଦୟନ ସୂପକାର

ରାମଭକ୍ତ ପିତାଙ୍କର ଦୁଃଖୀଦେଖି ମନ - ଆଗ୍ରହରେ ପୁତ୍ର ତାଙ୍କୁ ପଚାରିଲା ପ୍ରଶ୍ନ ॥

କୁହ ପିତା ଆହେ କିମ୍ପା ହୋଇଛ ଉଦାସ - କି କରିଲେ ତୁମ ମନ ହୋଇବ ଉଲ୍ଲାସ ॥

ବିକଟ ସମସ୍ୟାରେ ପୁଅ ଘାରିଅଛି ଆଜି - କି କରିବି ତାହା ମୁହିଁ ପାରେନାହିଁ ଭାବି ॥

ପବନସୂତଙ୍କୁ ଅତୀତେ କରୁଥିଲି ପୂଜା - ରାତିରେ ସେ ଆସି ହେଲେ ମୋ ସପନେ ଉଭା ॥

କହିଲେ ମୋହର ପୂଜା କରନାହିଁ ଆଉ - ହେ ଭଗତ ମୋର ପ୍ରଭୁ ରାମ ଥାଉ ଥାଉ ॥

ହନୁମାନଙ୍କ ସ୍ୱପ୍ନାଦେଶ ପାଳନ କରିଲି - ଶ୍ରୀ ରାମଙ୍କ ଆରାଧନା ସେହି ଦିନୁ କଲି ॥

କାଲି ରାତି ସୀତାପତି ସପନେ ଆସିଲେ - ମୋତେ ଆଉ ପୂଜନାହିଁ ଏକଥା କହିଲେ ॥

କି କରିବି ଆଉ ମୋତେ ବୁଦ୍ଧି ନ ଦିଶଇ - କାହାକୁ ପୂଜିବି ଏହି ଭାବନା ଗ୍ରାସଇ ॥

ଚିନ୍ତାଛାଡ଼ କହେ ପୁତ୍ର ସଜୋରସେ ହସି - କହିବି ଏପରି କଥା ହୋଇଯିବ ଖୁସି ॥

ତ୍ରେତୟା ଗଲାଣି ବିତି ଏବେ କଳିକାଳ - ଧର୍ମର ଭଣ୍ଡାରେ ଏବେ ପାପୀ ଦ୍ୱାରପାଳ ॥

ରାମଭକ୍ତ ହନୁମନ୍ତ ଯୁଗ ଏବେ ନାହିଁ - ରାମଭକ୍ତ ଆଜିକାଲି ରାମଙ୍କୁ ବିକଇ ॥

ରାମନାମ ଉଚ୍ଚାରିଣ ଥାଳିଟିଏ ଧରି - ଭିକ୍ଷାରେ ମାଗଇ ଭୋଟ୍ ପ୍ରବଞ୍ଚନା କରି ॥

କ୍ଷମତା ଦିଅ ଆମକୁ ଦେଉଅଛୁ କଥା - ଦେଶେ ରାମରାଜ୍ୟ ବଚନ ନ ହେବ ଅନ୍ୟଥା ॥

ଗଢ଼ିବୁ ରାମମନ୍ଦିର ଜନ୍ମସ୍ଥାନେ ଯାଇ - ବର୍ଷ ବର୍ଷ ଗଲା ବିତି ସପନ ଦେଖାଇ ॥

ପଣ୍ୟବସ୍ତୁ ହେଲେ ପ୍ରଭୁ ଏହାଙ୍କ ଦାଉରେ - କହିଲେ ମୋ ରଚିନାହିଁ ଏପରି ଭକ୍ତିରେ ॥

ନିଜସ୍ୱାର୍ଥରେ ପ୍ରଭୁଙ୍କୁ କରନ୍ତି ପ୍ରୟୋଗ - ଦିଅଁଙ୍କୁ ହଜମ କଲେ ଖାଉ ଖାଉ ଭୋଗ ॥

ସ୍ୱାର୍ଥୀ ଭକ୍ତଙ୍କର ଦେଖି ଏ ଅଧମ କର୍ମ - ଶ୍ରୀରାମ କହନ୍ତି ମୋତେ ଦିଅହେ ବିଶ୍ରାମ ॥

ପ୍ରଭୁ ଯଦି ଚାହାନ୍ତି ବିଶ୍ରାମ କରିବାକୁ - ତୁମେ କିଆଁ ବ୍ୟସ୍ତହୁଅ ପୂଜା କରିବାକୁ ॥

ମନେ ଯେବେ ଇଚ୍ଛା ହେବ କରିବାକୁ ପୂଜା - ଦୀନଦୁଃଖୀଙ୍କର ଯାଇ କରିବ ହେ ସେବା ॥



# ପ୍ରେମ ବିବାହ : ଏକ ବିଶ୍ଳେଷଣ

ବବି ଅନସୂୟା

ଭଲ ପାଇବାରେ ନା ଥାଏ ଆଦି ନା ଅନ୍ତ । ବୋଧ ହୁଏ ସେଇଥିପାଇଁ ଏହାକୁ ସମସ୍ତେ 'ସୀମାହୀନ' ପ୍ରେମ ବୋଲି ଆଖ୍ୟା ଦିଅନ୍ତି । ଇଂରାଜୀରେ ଗୋଟିଏ କଥା ରହିଛି – 'Love is Blind' ଅର୍ଥାତ ପ୍ରେମ ଅନ୍ଧ । ପ୍ରକୃତରେ ପ୍ରେମରେ ସବୁକିଛି ଭଲ ଲାଗେ, ଦିନକୁ ବି ରାତି କରିଦିଏ ଆଉ ରାତିକୁ ଦିନ । ନା ଭୋକ ଲାଗେ ନା ଶୋଷ ହୁଏ, ନା ନିଦ ଲାଗେ ନା ଚେଇଁ ହୁଏ । ଏଇ ଭଲ ପାଇବାର ଯାଦୁକାରୀ ସ୍ପର୍ଶ ଏମିତି ଯେ ପ୍ରେମିକ ବା ପ୍ରେମିକାର ସବୁ ବଦମାସି ବି ମନକୁ ଛୁଇଁ ଛୁଇଁ ଯାଏ...

କଥାଟା ପ୍ରେମ କଲା ପର୍ଯ୍ୟନ୍ତ ଠିକ୍ ଅଛି, କିନ୍ତୁ ବନ୍ଧୁ କେବେ ଭାବିଛନ୍ତି କି ? ଏଇ ପ୍ରେମ ଯେବେ ବିବାହରେ ପରିଣତ ହେବାକୁ ଯାଉଥାଏ ସେତେବେଳେ କି ପ୍ରକାର ପରିସ୍ଥିତିକୁ ସାମନା କରିବାକୁ ହୁଏ । ପୁଣି ବିବାହ ପରେ କଣ ହୁଏ ? ସେତେବେଳେ ସେଇ ପ୍ରେମଟିକକ ବଜାୟ ରହେ କି ନା ? ହଁ, ଯେବେ ଭାବିନାହାନ୍ତି ତେବେ କିଛି କଥା ନାହିଁ । କିନ୍ତୁ ଯେଉଁମାନେ ଏଇ ରାସ୍ତାରେ ଯାଇଛନ୍ତି ବା ଯାଉଛନ୍ତି ସେମାନେ ନିଶ୍ଚୟ ଦୀର୍ଘଶ୍ୱାସ ପକେଇବେଣି । ବହୁତ କମ ଭାଗ୍ୟବାନ ଲୋକ ଥିବେ ଏ ଦୁନିଆରେ, ଯେଉଁମାନେ କହି ପାରିବେ ଆମେ ପ୍ରେମରେ 'ସଫଳ' ।

ମୁଁ ଜାଣେ ମୋ କଥା ଗୁଡ଼ାକ ଟିକେ କଷ୍ଟ ଦେଉଥିବ ପାଠକମାନଙ୍କୁ, ମାତ୍ର ଏହା ନିଚ୍ଛକ ସତ କଥା । ଏଇ ଦେଖୁନାହାନ୍ତି ଯେମିତି ମୋ ବାନ୍ଧବୀ, ଯିଏ କି ବିଚାରୀ ଗୋଟିଏ ପିଲାର ପ୍ରେମରେ ପାଗଳ... ହେଲେ ବାହା ହେଇ ପାରୁନି । କାରଣ ବାପା ମା' ରାଜି ହେଉନାହାନ୍ତି । ଅବଶ୍ୟ ଏଇ କ୍ଷେତ୍ରରେ ଆପଣ କାହାକୁ ବି ଦୋଷ ଦେଇପାରିବେ ନି । ସମସ୍ତେ ନିଜ ନିଜ ଜାଗାରେ ଠିକ୍ । ପୁଅଟି ଉଚ୍ଚ ଶିକ୍ଷିତ, ଭଲ ଚାକିରୀ କରେ, ଭଲ ସ୍ୱଭାବ ମଧ୍ୟ, କିନ୍ତୁ ଭିନ୍ନ ଜାତିର । ଆଉ ଆପଣମାନେ ତ ଜାଣିଥିବେ ଏବେ ବି ଆମ ସମାଜ ଆଜି ବି ଏହି ଭଳି ବିବାହକୁ ଗ୍ରହଣ କରି ପାରୁନାହିଁ । ଅବଶ୍ୟ କିଛି କ୍ଷେତ୍ରରେ ହେଉଛି... କିନ୍ତୁ ବହୁ କଷ୍ଟରେ । ଯେଉଁମାନେ ଭିନ୍ନ ଭିନ୍ନ ଜାତିର ହୋଇମଧ୍ୟ ବିବାହ କରିଛନ୍ତି ସେମାନେ ବୁଝିପାରୁଥିବେ ଯେ କାହିଁକି ବାପା ମା' ରାଜି ହୁଅନ୍ତି ନାହିଁ ।

ଏ ସମାଜର ଡ଼ର, ନିଜର ପ୍ରତିଷ୍ଠା ଓ ସମ୍ମାନ, ମାନ ମର୍ଯ୍ୟାଦା, ଝିଅର ପସନ୍ଦ (ପୁଅ) ଉପରେ ଅବିଶ୍ୱାସ ଏବଂ ସର୍ବୋପରି ଝିଅର ଭବିଷ୍ୟତ। ଝିଅକୁ ଏମିତି ଶାଶୁଘରେ କିଛି ଶୁଣିବାକୁ ନ ପଡୁ, ତାକୁ ଶାରିରୀକ ବା ମାନସିକ ନିର୍ଯ୍ୟାତନା ଭୋଗିବାକୁ ନ ପଡୁ।

କିନ୍ତୁ ପ୍ରେମ କରୁଥିବା କିଛି ପାଗଳମାନେ କୁହନ୍ତି ଯେ ଏଇତ ଆମ ଜୀବନ, ଆମେ ଯାହା ଚାହିଁବୁ ତାହା କରିବୁ, ଯେମିତି ଚାହିଁବୁ ବଞ୍ଚିବୁ, ଏଥିରେ ଘର ଲୋକ କାହିଁକି ଦଖଲ ଦେଉଛନ୍ତି? ଏ ପ୍ରଶ୍ନର ଉତ୍ତର ପାଠକେ କଣ ଦେବେ ମୁଁ ଜାଣେନି। ମାତ୍ର ମୋର ପ୍ରତିକ୍ରିୟା ହେବ ‘ନା’ ବି ଆଉ ‘ହଁ’ ବି। ‘ନା’ ଏଇଥି ପାଇଁ ଯେ ବିବାହ କେବଳ ଦୁଇଟି ମନର ମିଳନ ନୁହେଁ, ଏକ ସାମାଜିକ ବନ୍ଧନ ଯାହା ଦୁଇଟି ପରିବାରକୁ ମଧ୍ୟ ଏକାଠି କରିଥାଏ। ତୁଚ୍ଛା ପାଶ୍ଚାତ୍ୟ ସଂସ୍କୃତିର ଦ୍ୱାହିରେ ପରସ୍ପର ଭିତରେ ବୁଡ଼ିରହି ନିଜ ସାଂସ୍କୃତିକ ଓ ପରମ୍ପରାକୁ ଆମେ ଭୁଲିଯିବା ଉଚିତ ନୁହେଁ। ଏହା ସର୍ବଦା ମନେ ରଖିବା ଉଚିତ ଯେ ଆମର ଅସ୍ତିତ୍ୱ ଆଧାର କିଏ ଓ କେଉଁଠୁ ଆସିଛି। ପରପକ୍ଷରେ ‘ହଁ’ ଏଇଥି ପାଇଁ ଯେ ଏବେ ଗୋଟେ ଘଟଣା ମୋ ସମ୍ପର୍କୀୟଙ୍କ ସହ ଘଟିବାର ମୁଁ ଦେଖିଛି। ସେ ଏକ ଉଚ୍ଚ ଜାତିର ପୁଅକୁ ଭଲ ପାଆନ୍ତି। ଏବେ ପୁଅଘରେ ସର୍ତ୍ତ ରଖିଛନ୍ତି ଯେ ଯଦି ବାହାଘର ହୁଏ ତ ତାଙ୍କ ରୀତିନୀତି ଅନୁସାରେ ହେବ ଏବଂ ତାଙ୍କରି ଲୋକ ହିଁ ଝିଅର କନ୍ୟାଦାନ କରିବେ, କନ୍ୟାପକ୍ଷ ନୁହେଁ। ଏଭଳି ପରିସ୍ଥିତିରେ ଆପଣ ହିଁ କୁହନ୍ତୁ କଣ କରାଯାଇପାରିବ? କାରଣ ଆଜିକାଲି ଆଗ ଭଳି ବାପାମା’ଙ୍କ ସମର୍ଥନ ବିନା ଘରୁ ପଳେଇଯିବା ବାହା ହବା ବହୁତ୍ କମ ହୋଇଯାଇଛି। ବିଲ୍‌କୁଲ୍ ହେଉନି କହିଲେ ଚଳିବ। ଏବେ ପ୍ରେମୀ ଯୁଗଳମାନେ ନିଜ ନିଜ ବାପା ମା’ଙ୍କ ଅନୁମତି ର ସହ ବାହା ହେବାକୁ ଇଚ୍ଛା ପ୍ରକାଶ କରୁଛନ୍ତି। କିଛି ଜାଗାରେ ବାପା ମା ରାଜି ବି ହେଉଛନ୍ତି। କାରଣ ଦୁଇଜଣ ଯାକ ସାଙ୍ଗ, ସମାନ ଶିକ୍ଷାଗତ ଯୋଗ୍ୟତା, ଏକା ଜାଗାରେ ବି ଚାକିରୀ। ତେଣୁ ପରସ୍ପରକୁ ଭଲଭାବେ ବୁଝିପାରିବେ ଜୀବନ ସାରା। କିନ୍ତୁ ଏମିତି ବି ପିତାମାତା ଅଛନ୍ତି ଯେଉଁମାନେ ପିଲାର ସବୁପ୍ରକାର ଯୋଗ୍ୟତା ଥାଇ ବି ରାଜି ହୁଅନ୍ତି ନାହିଁ। ଏଥି ପାଇଁ ଯେ ଝିଅଟି ବା ପୁଅଟି ତାଙ୍କ ପସନ୍ଦର ନୁହେଁ। ଓ ସମାଜର ଆଡ଼ରେ ପ୍ରସ୍ତାବକୁ କାଟି ଦିଅନ୍ତି। ସେଥିପାଇଁ ବିଚାରା ମୋର ଜଣେ ବନ୍ଧୁ ଆଠ ବର୍ଷ ହେଲା ଅପେକ୍ଷା କରିଛି। କେବେ ତା ପ୍ରେମିକର ଘରଲୋକେ ରାଜି ହେବେ ଏବଂ କେବେ ସେ ବାହା ହେବ !!!

ଏ ତ ଗଲା ପ୍ରେମ ବିବାହର ଆରମ୍ଭ ଅଧ୍ୟାୟ ର ସମସ୍ୟା । ତା'ପରର ସମସ୍ୟା ତ ଆହୁରି ଗୁରୁତର. ବାହାଘରଟା ହେଇସାରିବା ପରେ ପ୍ରେମିକ ବନିଯାଏ ସ୍ୱାମୀ ଓ ପ୍ରେମିକା ହୋଇଯାଏ ସ୍ତ୍ରୀ । ଆଗରୁ ପରସ୍ପର ସହ ଚିହ୍ନା ଜଣା, ନୁତନତ୍ୱ ସେତେଟା କିଛି ଖାସ ନାହିଁ । ଆଗରୁ ଦିନଟାଯାକ ଚାଟ୍ ଗୁପଚୁପ୍ ଖିଆ, ସିନେମା ଦେଖା, ବଜାର ବୁଲା, ପାର୍କ ଯିବା ଓ ରାତିରେ ମୋବାଇଲରେ କଥାହେବା । ହେଲେ ବିବାହ ପରେ ଏଇ ରୁଟିନ୍ ବନ୍ଦ । ଏବେ କେବଳ ପରସ୍ପରର ମୁହଁ ଦେଖାଦେବି । ଏବେ ଆସିଯାଏ ପରସ୍ପରକୁ ଦେଇଥିବା ପ୍ରତିଶୃତିକୁ କାର୍ଯ୍ୟରେ ପରିଣତ କରିବାର ସମୟ । କିଏ କାଃଆ ସଥା କେତେ ରଖିପାରୁଛି ? ଆପୋଷ ବୁଝାମଣାରେ ଯିଏ ଯେତେ ଖାପଖୁଆଇ ଚଳିଲା, ସେ ସମ୍ପର୍କ ସେତେ ସୁଦୃଢ଼ ହେଲା । ନହେଲେ, ଆପଣ ଆଜିକାଲି ଦେଖୁଥିବେ ପ୍ରାୟ ବାନ୍ଧବ ଓ ବାନ୍ଧବୀ ଭିତରେ ହେଉଛି ବିବାହ, ଦୁଇଜଣ ଚାକିରୀ କଲେ, ନିଜ ଉପରେ ଖର୍ଚ୍ଚ କଲେ । ଯେତେବେଳେ ପୁଅ ନିଜ ଘରକୁ ଟଙ୍କା ଦେଲେ ସେତେବେଳେ ଝିଅର ମନଦୁଃଖ ଏବଂ ଏଇଠୁ ଆରମ୍ଭ ହୁଏ କଳହର ସୂତ୍ରପାତ । ମୋ ଚାରିପାଖରେ ଏମିତି ଅନେକ ଚରିତ୍ର ମାନଙ୍କୁ ମୁଁ ଦେଖିଛି ଏବଂ ଏବେ ବି ଦେଖୁଛି । ପରସ୍ପର ସହ ପ୍ରତିଯୋଗିତା, ବ୍ୟୟବହୁଳ ଜୀବନଶୈଳୀ ବୋଧହୁଏ ଏ ସବୁର ଗୋଟେ ଗୋଟେ କାରଣ ଯାହା ବି ଆମ ସମାଜପାଇଁ ଏକ ବିପଦ ସଙ୍କେତ । ଆଜିକାଲି ସମସ୍ତେ ଦାୟିତ୍ୱମୁକ୍ତ ଛୋଟ ପରିବାର ଚାହୁଁଛନ୍ତି, ଯାହା କି ଠିକ୍ ନୁହେଁ । ମାତ୍ର ସମ୍ପୂର୍ଣ୍ଣ ରୂପେ ଭୁଲ ବୋଲି ବି ମୁଁ କହିପାରିବି ନାହିଁ । କାରଣ କିଛି ଏମିତି ବି ଲୋକ ଅଛନ୍ତି ଯେଉଁମାନେ ନିଜ ପୁଅବୋହୁଙ୍କୁ (ଖାସ କରି ପୁଅକୁ) ଏକ ଟଙ୍କା ତିଆରି କରିବା ଯନ୍ତ୍ରବୋଲି ଧରି ନେଇଛନ୍ତି । ସେମାନଙ୍କ ମାନସିକତା କୁହେ ଯେ ଆମ ପୁଅ ଉପରେ ଆମେ ଏତେ ଖର୍ଚ୍ଚ କରୁଛୁ ମାନେ ତାକୁ ଯେମିତି ହେଲେ ଅସୁଲ କରିବୁ । ତେଣିକି ପୁଅ ରୋଜଗାର କରି କି ଦେଉ, ଯାହା କୁ ବି ବାହା ହେଉଛି ସେ ଦେଉ କିମ୍ବା ଝିଅ ତା ଘରୁ ଯୌତୁକ ରୂପରେ ଆଣୁ । ଅର୍ଥ ତ ସେମାନଙ୍କ ପାଇଁ ସତେ ଯେମିତି ଗୋଟେ ଗଛପାଚିଲା ଫଳ, ସାଙ୍ଗେ ସାଙ୍ଗେ ତୋଳି ଆଣିବ । ଏଇ ଜାଗାରେ ଭାବନ୍ତୁ ଭଲା ଝିଅଟିଏ ହୋଇଥିଲେ ବି ସେ କଣ ଗୋଟେ ଭଲ ବୋହୁ ହେବାକୁ ଚାହିଁବ ?

ମୁଁ କହୁନି ସବୁଜାଗାରେ ଶାଶୁଘର ଲୋକ ହିଁ ଭୁଲ ଥାଆନ୍ତି । କିଛି ଏମିତି ବି ଲୋକ ଅଛନ୍ତି ସମାଜରେ ଯେ ନିଜ ବୋହୁର ଲକ୍ଷେ ଦୋଷ ଥିବା ସତ୍ତ୍ୱେ ସ୍ନେହ ଶ୍ରଦ୍ଧା

କରନ୍ତି, ସେମାନଙ୍କୁ ସମ୍ପୂର୍ଣ୍ଣ ସ୍ୱାଧିନତା ଦିଅନ୍ତି । ଏହା ସତ୍ୱେ ବି ସେମାନେ ଶାଶୁଘରୁ ଅଲଗା ହୁଅନ୍ତି, କାଳେ ସ୍ୱାମୀର ପଇସାରେ ଭାଗ ପଡ଼ିବ ବୋଲି ।

ତେବେ ମୋ ହିସାବରେ ପ୍ରେମ ବିବାହରେ ସମ୍ପର୍କ ମଜବୁତ୍ ହେବା ନିହାତି ଜରୁରୀ । ଏଇତ ଗୋଟେ ନିରାଟ ସତକଥା ଯେ ପ୍ରେମ ବିବାହରେ ନା ଶାଶୁଶଶୁର ଠିକ୍ ଢ଼ଙ୍ଗରେ ବହୁକୁ ସ୍ୱୀକାର କରନ୍ତି ନା ବୋହୁ ସେମାନଙ୍କୁ । ଏଠି ପୁଅର ହିଁ ଗୁରୁଦାୟିତ୍ୱ । ସେ ଯେପରି ଦୁର୍ବଳ ନ ହୋଇ ଏକ ଶକ୍ତ ସେତୁ ପରି ସେମାନଙ୍କୁ ବାନ୍ଧି ରଖିବ । ନିଜ ଘରଲୋକଙ୍କ ପ୍ରତି ଥିବା କର୍ତବ୍ୟକୁ ସମ୍ପାଦନ କରିବ ଏବଂ ନିଜ ସ୍ତ୍ରୀକୁ ମଧ୍ୟ ଯଥେଷ୍ଟ ସ୍ନେହ, ଶ୍ରଦ୍ଧା ଓ ସମ୍ମାନ ଦେଇ ପାରୁଥିବ । ଗୋଟେ ଝିଅ ଯେତେବେଳେ ତା ସ୍ୱାମୀର ହାତଧରି ଆଉ ଗୋଟେ ନୂଆ ଘରକୁ ଆସେ (ବିଶେଷ କରି ପ୍ରେମ ବିବାହରେ) ସେତେବେଳେ ସେ କେବଳ ଆଉ କେବଳ ତା ସ୍ୱାମୀ ଉପରେ ହିଁ ନିର୍ଭରଶୀଳ ହୋଇପଡ଼େ । ଏହି କ୍ଷେତ୍ରରେ ପୁଅଟି ହିଁ ତାକୁ ସାହାସ ଦେବା ଉଚିତ । ଏବଂ କେବଳ ସେ ହିଁ ଝିଅଟିକୁ ଶିଖାଇ ପାରିବ ଯେ ଯେମିତି ସେ ଝିଅ ସମସ୍ତଙ୍କୁ ନିଜର ବୋଲି ଭାବିବ । ଏହା ହିଁ ଗୋଟେ ପୁଅର କର୍ତ୍ତବ୍ୟ । ସେ ଯଦି ସେତିକି ନିର୍ଭରଯୋଗ୍ୟ ପ୍ରତିଶୃତି ଦେଇପାରିଲା, ତେବେ ଝଗଡ଼ାର ସୃଷ୍ଟି ହେବ ନାହିଁ ।

ଏଠି ଝିଅର ଭୁମିକା କିଛି କମ ନୁହେଁ । କିଛି ବୁଝାମଣା ତ ତାକୁ ବି କରିବାକୁ ପଡ଼ିବ ଏବଂ କରିବା ଉଚିତ ମଧ୍ୟ । ସେ ନିଜ ଶାଶୁଘରକୁ ନିଜ ଘର ଭାବି ଖାପଖୁଆଇ ଚଳିବା ଉଚିତ । ଆଉ ପୁଅଘର ଲୋକେ ବି ନୂଆ ବୋହୁଟିକୁ ସ୍ନେହ ଓ ଶ୍ରଦ୍ଧା ସହ ଆପଣେଇ ନେଲେ ନିଶ୍ଚିତ ଭାବେ ଏପରି ବିବାହ ସଫଳ ହେବ ।

ସର୍ବୋପରି ଗୋଟାଏ ସମ୍ପର୍କ ଦୁଇଜଣଙ୍କୁ ନେଇ । ପରସ୍ପର ହାତ ଛନ୍ଦାଛନ୍ଦି ହୋଇ ଜୀବନସାରା ତାଙ୍କୁ ହିଁ ଚାଲିବାକୁ ହେବ । ଯଦି ସେମାନେ ଚାହିଁବେ ତ ଏକ ସୁସ୍ଥ ଦାମ୍ପତ୍ୟ ଜୀବନ ବଞ୍ଚିପାରିବେ, ନହେଲେ ଅଲଗା ହେବାର କାରଣ ତ ବହୁତ ବାହାରିବ । ତେଣୁ ମୋର ଏତିକି ଅନୁରୋଧ, ବିଆହ କରିଥିବା ଓ କରୁଥିବା ପ୍ରେମୀମାନଙ୍କୁ, ଏକ ସୁଖୀ ସଂସାର ଗଢ଼ିବାକୁ ସର୍ବଦା ଚେଷ୍ଟା କରନ୍ତୁ, ନିଶ୍ଚିତ ରୂପେ ସଫଳ ହେବେ ।

# କ୍ଷାନ୍ତ ହୁଅ... ତୁମେ... ଶାନ୍ତ ହୁଅ !!!



ପ୍ରଶାନ୍ତ କୁମାର ଭୂୟାଁ

ଆଉ ଦିଟା ବୋମା ବିସ୍ଫୋରଣ ରେ...
ଆଉ ଦୁଇଶ ନୀରିହ ଜୀବନ ସଂହାର ରେ...
ସମସ୍ୟା ର ଆଶୁ ସମାଧାନ କଣ , କରି ପାରିବ ତୁମ ଆତଙ୍କତା...??
ହେ ଆତଙ୍କବାଦୀ ....!!!
କ୍ଷାନ୍ତ ହୁଅ ... ତୁମେ... ଶାନ୍ତ ହୁଅ ...!!!
ଦେଖ ସେହି ଅବେଳ ରେ ବଳ ପଡୁଥିବା ନୀରିହ ଲୋକଙ୍କୁ ....
ଏକ ଅନିଶ୍ଚିତତା ରେ ଦିନ କାଟୁଥିବା ମୋ ଦେଶବାଶୀଙ୍କୁ......

ଆଉ ଦିଟା ମିଥ୍ୟା ଶ୍ୱେତପତ୍ର ର ଇସ୍ତାହାର ରେ ...
ଆଉ ଦି ହଜାର କୋଟି ଟଙ୍କା ର ଲୁଟ୍ ରେ
ତୁମ ମନ ଆଉ ଆତ୍ମା କଣ ପୁରିଯିବ ପରମ ତୃପ୍ତି ରେ...??
ହେ ମନ୍ତ୍ରୀ ନେତା...!!!
କ୍ଷାନ୍ତ ହୁଅ ... ତୁମେ... ଶାନ୍ତ ହୁଅ ...!!!
ଦେଖ ଥରେ ଲୁଟୁଥିବା, ଠକୁଥିବା ସେହି ନୀରିହ ବିଶ୍ୱାସୀ ଜନତା ରେ.........
ଶଠ ଆଉ ପ୍ରବଞ୍ଚନା ର ଭୂଷଣ ରେ ଭଳ ଯାଉଥିବା ମୋ ଦେଶବାଶୀ ରେ....

ଆଉ ଦିଟା ନଙ୍ଗଳା ଦେହ କୁ ଝୁଣି ଭିଣୀ ଖାଇ
ଆଉ ଦିଟା ନିଷ୍ପାପ ଜୀବନରେ କଳଙ୍କ ଲଗାଇ
ତୁମ କାମନା ବାସନା ର ଭୋକ କଣ ପୁରିଯିବ ସେଥିରେ....??
ହେ ଧର୍ଷଣ କାରୀ ...!!!
କ୍ଷାନ୍ତ ହୁଅ ... ତୁମେ... ଶାନ୍ତ ହୁଅ ...!!!
ଦେଖ ଥରେ ଭିତ ନ୍ରସ୍ତ ସେଇ ନରୀହ ଆଉ କରୁଣ ଗୃହାଣୀ.
ଅଦିନ ରେ ଝରି ପଡୁଥିବା ସେହି କୋମଳ ଫୁଲର ଜୀବନୀ..

ଆଉ ଦିଟା ସରଳ ନିରିହ ଲୋକଙ୍କୁ ଡରାଇ...
ଆଉ ଦୁଇଶ ଦାଦାବଟି ଅସୁଲ କରିଦେଇ...
ତୁମେ କଣ ରାତା ରାତି ପାଲଟିଯିବ ମହାପୁରୁଷ ରେ...??
ହେ ଗୁଣ୍ଡାଭାଇ...!!!
କ୍ଷାନ୍ତ ହୁଅ ... ତୁମେ... ଶାନ୍ତ ହୁଅ ...!!!
ଦେଖ ଥରେ ଡରି ମରି ମୁହଁ ମାଡି ରହି ଥିବା ସେ ଲୋକଙ୍କୁ
ତୁଣ୍ଡ ଥାଇ ଜଡା ଭଳ ବଞ୍ଚୁ ଥିବା ସେ ସରଳ ଜୀବନ କୁ......

# ପ୍ରେମ ସମ୍ଭାବନା



ସୁଜିତ କୁମାର ସାହୁ

ମୁଁ ଜାଣିଛି, ତୁ ହସୁଛୁ...

ମତେ କଣେଇ କଣେଇ ଚାହୁଁଚୁ...

ଥରେ ଦିଶୁନୁ, ଥରେ ଦିଶୁଚୁ...

ଖାଲି ମିଛରେ କଥା ତୁ ହଉଛୁ ;

ତୁ ଭାବୁଛୁ... ମୋତେ କହିବୁ,

ଅଳ୍ପ ପାଖରେ ବସିବୁ,

ତୁ କହିବୁ, ମୁଁ ଶୁଣିବି,

ସ୍ମୃତିର ପହିଲା ଖୋଲିବି;

ଆମେ ଗପିବା... ମିଶି ହସିବା

କେତେ ଖୁସି ର ପାଖୁଡ଼ା ମେଲିବା,

କିଛି ତୋର... କିଛି ମୋର....

ଟିକେ ନିଜର ନିଜର ଲାଗିବ;

# ତୁମକୁ ଭେଟିବି ବୋଲି



ସ୍ୱପ୍ନଲତା ମିଶ୍ର

ତୁମକୁ ଭେଟିବି ବୋଲି
ଆଗପଛ ନ ବିଚାରି
ଘରୁ ଗୋଡ଼ କାଢ଼ିଦେଲି...
ତୁମକୁ ଖୋଜୁ ଖୋଜୁ
କେବେ ତୁମ ଛାଇ ପଛେ
ଲୁଚକାଳି ଖେଳେ,
କେବେ ପୁଣି ବଇଁଶୀ ସୂରରେ
ମୁଁ ନିଜକୁ ହିଁ ଭୁଲେ...
ଜାଣେନା ମୁଁ କେତେବେଳେ
ଏତେ ବାଟ ଆଗେଇ ଆସିଲି...
ବହୁଦୁରେ ଗଲନି ତ ରହି
ଚିହ୍ନା ଜଣା ଗାଁ ଓ ଦୁନିଆ...
ଏବେ ଏଠି ନିରବ ନିଥର ସବୁ
ଏକ ଅଜଣା ସଂଶୟେ
ଶିହରିତ
ଏବେ ମୋର ତନୁ ମନ,
ବଇଁଶୀର ସ୍ୱନ ନାହିଁ
ନାହିଁ ତୁମ ଛାଇ
ରହି ରହି ଯାହା ଖାଲି
ପବନରେ ଭାସି ଆସେ
ତୁମରି ନିଃଶ୍ୱାସ...
ବଇଁଶୀର ସ୍ୱନ ନାହିଁ
ନାହିଁ ତୁମ ଛାଇ
ଅସ୍ପଷ୍ଟ ସ୍ୱରରେ ହେଲେ କହେ
ମୋତେ କେହି
ଫେରିବାକୁ ହେବ ଏବେ
ତୁମକୁ ଭେଟିବା ଆଗରୁ ଯେଣୁ
ନିଜକୁ ଭେଟିବା ଲୋଡ଼ା
ନିଜକୁ ଚିହ୍ନିବା ଲୋଡ଼ା
ନିଜେ ନିଜ ଠିକଣାରେ
ଥରୁଟିଏ ନିଜକୁ ପାଇବା ଲୋଡ଼ା...
ତୁମକୁ ଭେଟିବା ବୋଲି
ଆଗ ପଛ ନ ବିଚାରି
ସବୁ ତ ଛାଡ଼ିଲି
ତୁମେ କୁହ...
ଏବେ ନିଜକୁ ମୁଁ ଖୋଜିବାକୁ
ଯିବି ପୁଣି କେଉଁ ଠିକଣାରେ... ?

# ନିଆରା ପ୍ରେମ



ମାନସ ରଞ୍ଜନ ଦାଶ

ହଁ ନିଆରା

ଭାରି ନିଆରା

ଶୀତ ସକାଳର କଅଁଳ ଖରା

ତା'ଠୁ ନିଆରା

ପ୍ରେମର ପସରା...

କେବେ ଲୁଚି ଯାଏ, କେବେ ଦିଏ ଧରା.. ହଁ ନିଆରା...

ଅପଲକ ଚାହୁଁ ଥାଏ

ମନେ ମନେ କହୁଥାଏ

ମିଳନ୍ତା କି ଆଜି... ହଜିଲା ସେ ସାଥୀ...

କହି ଦିଅନ୍ତୁ ମୁଁ ମନକଥା ସାରା.. ହଁ ନିଆରା...

ଏମିତିକା ଏଇ ପ୍ରେମର ସାଗର

ପହଁରିଛି ଯିଏ ଭୁଲିଚି ତା କୂଳ

ବୁଡ଼ିଛି ଯିଏ...

ପାଇଛି ସେଇ ତା କିନାରା... ହଁ ନିଆରା...

ଭାଙ୍ଗେ ମନ... ଭାଙ୍ଗେ ଆଶା

ତଥାପି, ଖାଲି ନୁହେଁ କେବେ ଏ ପ୍ରେମ ବସା

ଡ଼େଣା ଝାଡ଼ି ଝାଡ଼ି, ପକ୍ଷୀ ଆସେ ଉଡ଼ି

ଦୂର ଦେଶ ଛାଡ଼ି... ଖୋଜି ଖୋଜି ଆସରା... ହଁ ନିଆରା

ଭାରି ନିଆରା...

ଦୁଃଖ ବି ଦିଏ, ଦିଏ ବି ସାହାରା

ହଁ ନିଆରା

# ବିଫଳ ନାୟକ



ପ୍ରଦୀପ ପଣ୍ଡା

ସବୁକିଛି ଥାଇ ବି ନିଃସ୍ୱ ତୁମେ

ମହାଭାରତର ଜାଜ୍ୱଲ୍ୟମାନ ତାରକା

ପୁଣି ବିଫଳ ନାୟକ...

ଦୁନିଆର ସମ୍ରାଟ ହେବାର ଶକ୍ତି ଥାଇ ବି

ଅଙ୍ଗ ଦେଶ ନରପତି ହେଇ

ସୂଚ୍ୟଗ୍ର ମେଦିନି ପାଇଁ ବନ୍ଧା ପଡ଼ିଗଲ

ଧ୍ୱଂସର ମହାନାୟକର ବନ୍ଧୁ ହେଲ ।

ଧର୍ମ ଯୁଦ୍ଧରେ ପ୍ରତିପକ୍ଷ ହେଇ

ଅନ୍ୟାୟର ଧ୍ୱଜା ରକ୍ଷା କଲ ।

କିଏ ଅବା କଣ ଦେଇଥାନ୍ତା ତୁମକୁ...

ଜନନୀ କୁନ୍ତୀ ତ ଜନ୍ମ ଦେଇଥିଲେ

(ମୃତ୍ୟୁ ବି ଦେଇ ପାରିଥାନ୍ତେ)

ପିତା ସୂର୍ଯ୍ୟ ଦେଇଥିଲେ କବଚ କୁଣ୍ଡଳ ।

ପୁଣି ନିଜ ରକ୍ତର ଶତ୍ରୁ ହେଲ କାହିଁ

ଜାଜ୍ଞସେନୀକୁ ଜିଣି ପାରିଲନି ବୋଲି ?

ଦାତା କର୍ଣ୍ଣ ତୁମେ...

ସବୁ କିଛି ଥାଇ ବି ନିଃସ୍ୱ ତୁମେ...

ଅଧିରଥ ସୁତ

ସୂତପୁତ୍ର ବୋଲି ଗ୍ଲାନି କାହିଁକି

କଣ ଊଣାଥିଲା ରାଧାର ପୁତ୍ର ପ୍ରେମେ ?

ତୁମେ କହିଥିଲ ପରା...

'ଦୈବାୟତ୍ତ କୂଳେ ଜନ୍ମମ୍
ମଦାୟତ୍ତମ୍ ଚ ପୁରୁଷମ୍ '
କି ପୌରୁଷର ପରିଚୟ ଦେଲା... ?
ଅସ୍ତ୍ର ଶିକ୍ଷା ପାଇଁ ଗୁରୁଙ୍କୁ ଠକିଲ
ଛଳନାର ପ୍ରତିଦାନେ
ଅଭିଶପ୍ତ ହେଲ ।
କେମିତି ଜାଣିଲ ନାହିଁ... ?
ଦୂର୍ଯ୍ୟୋଧନର ଅହଂ
ସହ ନିଜକୁ ଯୋଡ଼ିଲ...
ଚକ୍ରବ୍ୟୁହ ରଚି
ଅଭିମନ୍ୟୁ ବଧ
କିପରି ପୌରୁଷ ?
ନୁହେଁ କି ସେ ପ୍ରତିଶୋଧ ବହ୍ନି
ତୁମ ହୃଦୟ ର ???
ଶୋଚନା କାହିଁକି ପୁଣି...
ଯଥେଷ୍ଟ ପାଇଛ ତୁମେ
ବିଧିର ଯାହା ଲେଖା ଥିଲା
ହେ କଳଙ୍କିତ ବୀର
ଭାରତର ଅତୁଳନୀୟ
ମହାନ୍ ବିଫଳ ନାୟକ ॥

# ସ୍ୱପ୍ନର ନାୟିକା



ସୁଧୀର ନାୟକ

ସ୍ୱପ୍ନରେ ଯେବେ ଆସ ତୁମେ ନିରବ ରାତିରେ

ଭୁଲିଯାଏ ପ୍ରିୟା ମୁଁ ନିଜକୁ ତୁମରି ପାଖରେ ।

ତୁମେ ଆସିଲ ମୋ ସ୍ୱପ୍ନର ଦୁଆର ଆପେ ଖୋଲିଯାଏ,

ସ୍ୱପ୍ନରେ ତୁମ କଥା ଭାବି ଭାବି ରାତି ପାହିଯାଏ ॥

କିନ୍ତୁ ଯେବେ ଚାଲିଯାଅ ପ୍ରିୟା ତୁମେ ମୋ ସ୍ୱପ୍ନର ଦୁନିଆରୁ,

ସେତେବେଳେ ମୋତେ ଲାଗେ ହୃଦୟଟା ଚାଲିଗଲା ମୋ ଶରୀରରୁ ॥

ଯଦି ଯିବାର ଥିଲା ପ୍ରିୟା କାହିଁକି ଆସିଲ ତୁମେ ମୋ ସ୍ୱପ୍ନରେ,

ତୁମେ ଗଲାପରେ ନିତି ମୁଁ ଝୁରୁଛି ପ୍ରିୟା ତୁମରି ସ୍ମୃତିରେ ॥

ଏଥର କଥା ଦିଅ ପ୍ରିୟା ତୁମେ ଆସିଲେ ଛାଡ଼ି ଯିବନି ମୋତେ,

ସ୍ୱପ୍ନର ତାଜମହଲରେ ମୁଁ ରଖିବି ତୁମକୁ ମୋ ସାଥେ... ॥

# ତୁ ମୋର ଭଗବାନ



ରଶ୍ମୀ ରଞ୍ଜନ ଦାଶ (ବାପୁ)

ଏ ଜୀବନେ ମୋର ଲୋଡ଼ା ନାହିଁ ତିଳେ କରିବା କୁ ତୋର
କେଉଁ  ନିଷ୍ପତ୍ତିର ପୁନଃ ର୍ବିଚାର
ନାହିଁ ତିଳେ ସେଥେଁ ଇଚ୍ଛା ମୋହର
କାରଣ ମୁଁ ତ ଜାଣିଛି ତୁ ମୋର ସବୁଠାରୁ ନିଜର........(୧)
ପିଲାଦିନେ କାଖ ତଳେ ଜାକି ଧରି ତୋତେ କେତେ ଖେଳ ଖେଳିଛି
ପୂଜା ଖେଳ ଖେଳୁ ଖେଳୁ ପାଣି ଢ଼ାଳି ତୋତେ ଓଦା କରିଛି
ତ ରଙ୍ଗ ଧୋଇ ଯାଇଛି,
ଏତେ ସବୁ ପରେ ବି ତ ମୋତେ କିଛି କହିନୁ
ମୋ ପିଲାଳିଆମୀକୁ କିଛି ଦଣ୍ଡ ଦେଇନୁ
ଭାବକୁ ଯେ ଦେଖିଛୁ ....................................(୨)
ବୟସ ର ସାଥେ ସାଥେ ଭାବେ ବେଶି ବାନ୍ଧିଛୁ
କାଲି ତୁ ଥିଲୁ ଛୋଟ ଆଉ ମୁଁ ଥିଲି ଛୋଟ ପିଲା
ଆଜି ମୁଁ ହେଲି ଯୁବକ ଆଉ ତୁ ମୋ ଠାକୁର ଘରବାଲା
ଆଜିବି ତୋତେ ପାଣି ଢ଼ାଳି ଦିଏ ଠିକ୍ କାଲି ପରି
ଏ କଥା ନୁହଁ ଯେ ମୁଁ ମନ୍ତ୍ର ଜାଣେନି....
ହେଲେ କାହିଁକି କେଜାଣି
ତୋତେ ଦେଖି ସବୁ ଭୁଲି ଯାଏ ଠିକ୍ ଛୋଟ ପିଲା ଟିଏ ପରି ......(୩)
ତୁ ଯଦି ମୋର ମୁଁ କିଆଁ ଉଠାଇବି ପ୍ରଶ୍ନ ତୋ ଇଚ୍ଛା ଉପର???
କାହିଁକି ନା, ଯିଏ ଯାହା କହୁ ପଛେ
ମୁଁ ତ ଜାଣିଛି
ତୁ ଏକା ମୋର ଆଉ ମୁଁ ତୋର.....(୪)
ଜୟ ଜଗନ୍ନାଥ



# ଜୀବନ ଲୀଳାବତୀ ସୂତ୍ର

ଡ଼ଃ ମେଜର ଗୌରୀପ୍ରସାଦ ମହାପାତ୍ର

ଉଦିତ ସୂର୍ଯ୍ୟପୁଣି ହୋଇଯାଏ ଅସ୍ତ

ଜନ୍ମ ହୋଇଥିଲେ ମୃତ୍ୟୁ ଚିରନ୍ତନ ସତ୍ୟ

ମୃତ୍ୟୁପରେ, କିଏ ଅବା କେତେଦିନ କରିବରେ ଶୋକ

ସମୟ ସୁଅଧାରେ ଧୀରେ ଧୀରେ ଭୁଲିବେ ସବୁ ତ!

ସାଧାରଣ ମଣିଷର ଏଇ ଇତିହାସ

ଦୁନିଆରେ ପ୍ରଭୂଙ୍କର

ଚାଲିଅଛି ଲୀଳାବତୀ ରଥ !!!



# ସ୍ମୃତି

ଉର୍ମିଳା ମିଶ୍ର

ତୁମେ କଣ ଚାହିଁଲେ
ମୋତେ ଦୂରେଇ ପାରିବ ନା
ତାଗିଦ୍ କରିବ ଆସେନା ବୋଲି
ମନକୁ... ହୁଏତ ବାହାନା
କରିବ ବର୍ତ୍ତମାନର ପରିସ୍ଥିତିରେ
ହେଲେ ମୁଁ ପରା ଶେଠ୍ ଗାଦି
ମାଡ଼ି ବସିଛି ବ୍ୟାଜ ପରେ ବ୍ୟାଜ
ବଢ଼ି ଚାଲିଛି ତୁମେ କଣ
ସେ ସବୁ ସୁଝି ପାରିବ
ନା ଗାଦିରୁ ମୋତେ ଉଠେଇ ପାରିବ
ମୁଁ ପରା ତୁମ ପିଲାବେଳୁ ତୁମ
ସହ ଅଛି ସୁଖରେ ଦୁଃଖରେ
ସାଙ୍ଗ ମାନଙ୍କ ସହ ଗୁଡ଼ି ଖେଳରେ
ଆଉ ପ୍ରେମିକା ମନରୁ ସ୍ୱପ୍ନ
ଚୋରୀ କଲା ବେଳେ ଆଉ ସେଦିନ ସେ
କାଳରାତ୍ରୀର ଅନ୍ତଚିରା କୋହ ଭିତରେ
ତେବେ ତଡ଼ିଲ ଦେଖି ମୋତେ
ସମୟର ତାଗିଦରେ....
ତୁମେ ହୁଏତ ଠାକୁର ମନ୍ଦିର ଯିବ
ବିନତି କରିବ ମଥା ପିଟିବ
ଠାକୁରଙ୍କ ଆଗେ ମୋଠୁ ପିଛା
ଛଡ଼େଇବାକୁ ହେଲେ ମୁଁ
ନଛୋଡ଼ବନ୍ଧା...
ଏମିତି ବି ହେଇପାରେ ତୁମେ ରାଗିବ
ମୋତେ ବାରମ୍ବାର ଖୁନ୍ କରିବାକୁ
ଚେଷ୍ଟା କରିବ... କିନ୍ତୁ ମନେ ରଖ
ମୋର ପ୍ରତି ରକ୍ତବିନ୍ଦୁ ଦ୍ୱିଗୁଣିତ ହୋଇ
ତୁମକୁ ବିବ୍ରତ କରିବ....

# ମା



ଅକ୍ଷୟ ରାଉତ

ମା - ଯାହାର ସ୍ଥାନ ସର୍ବୋଚ୍ଚ

ମା - ଯାହାର ନାମ ପରେ ଈଶ୍ୱରଙ୍କ ନାମ ଆସେ

ମା - ସୃଷ୍ଟି କରିନି ମମତାମୟୀ, ସ୍ନେହମୟୀ, ସର୍ବଂସହା

ମା - ହୋଇପାରେ ସେ କୂଳଟା, ଚରିତ୍ରହୀନା... ହେଲେ ବି ସେ ପୂଜନୀୟା, ବନ୍ଦନୀୟା

ମା - ଜୀବନର ନିଃଶ୍ୱାସ ଯାଏ ସେ ସନ୍ତାନର ମଙ୍ଗଳ କାମନା କରେ

ମା - ତ୍ୟାଗ, ବଳିଦାନ, ସମର୍ପଣ ର ଜୀବନ୍ତ ପ୍ରତୀକ

ମା - ଯାହାର ଚରଣ ସ୍ପର୍ଶରେ ଦୁନିଆର ସବୁ ସୁଖ ମିଳିଯାଏ

ମା - ସମୟ ଓ ପରିସ୍ଥିତି ହୁଏ ତ ବଦଳି ଯାଇଛି... ଆଜି ସେଇ ମା ନିଜର ସନ୍ତାନକୁ
ପୁଅ, ଝିଅ ର ଲିଙ୍ଗ ଭେଦ ରେ ଦେଖୁଛି, ଅନେକ ସମୟରେ ସେ ନିଜର କନ୍ୟା
ସନ୍ତାନକୁ ହତ୍ୟା କରୁଛି... କିନ୍ତୁ କାହିଁକି ? ତା ମାତୃତ୍ୱ କଣ କଳୁଷିତ ହୋଇଯାଇଛି...
ନା ସାମ୍ପ୍ରତିକ ସମାଜ ବ୍ୟବସ୍ଥା ତାକୁ ନିଷ୍ଠୁର କରିଦେଇଚି ?

ମା - କେବେ ସେ ତା ସୃଷ୍ଟିକୁ ନଷ୍ଟ କରିପାରେନି...

ମା - ଯଦି ସେ ତା ସୃଷ୍ଟିକୁ ନଷ୍ଟ କରିବାର ଥିଲା ତେବେ ସେ ଦଶମାସ ଗର୍ଭରେ ଧରି
ଏତେ ଯନ୍ତ୍ରଣା ସହିଲା କାହିଁକି ?

ମା - ସେ କେବେ ଭୁଲ କରେନି...

# ମୋ ଗୀତି କବିତା



ପର୍ଶୁରାମ ବେହେରା

ପିଲାଦିନ ସ୍ମୃତି ହେ ସମୟ ତୁ ଫେରିଆ....

ହେ ସମୟ ତୁ ଆ ଫେରିଆ
ମୋ ହଜିଲା ଦିନକୁ
ମୋ ପୁରୁଣା ସ୍ମୃତିକୁ
ମୋ କଣ୍ଢେଇ ଖେଳକୁ
ମୋ ବୋଉର ଗାଳିକୁ
ଆଉ ତୁ ଫେରେଇ ମୋତେ ଦେଇ ଯା...

ନେଇଚୁ ତୁ ଚୋରେଇ ମୋ ପିଲା ଦିନକୁ
ଭୁଲି ମୁଁ ପାରୁନି ସେଇ ଅଭୁଲା ସ୍ମୃତିକୁ
ସେଇ କାଗଜ ଡ଼ଙ୍ଗା
ସେଇ ବରଷା ଦିନ
ସେଇ ଦଉଡ଼ି ଡିଆଁ
ଆଉ ପୁନେଇ ଜହ୍ନ
ଆ ତୁ ଆ ମୋତେ ଦେଇ ଯା....

ସେଇ ରଙ୍ଗ ଖଡ଼ି
ଆଉ ଭଙ୍ଗା ସିଲଟ
ସେଇ ଛବି ବହି
ଆଉ ଚିରା ମଲାଟ
ସେଇ ଧୂଳି ଖେଳ ଆଉ
ଖରା ଛୁଟି
ସେଇ ମିଛି ମିଛିକା
ସାଙ୍ଗର କଟି
ଆ ତୁ ଫେରି ମୋତେ ଦେଇ ଯା....



# କ୍ଷୁଦ୍ର କବିତା

ପ୍ରୀତି ପ୍ରିୟଦର୍ଶିନୀ ମହାପାତ୍ର

ମୋ ଆଖିରେ ଚମକ, ସ୍ୱପ୍ନରେ ରଙ୍ଗ

କଳ୍ପନାକୁ ଦିଅ ରୂପ

ଭୟରେ ସାହାରା, ଧୈର୍ଯ୍ୟରେ ଗହରା

ତୁମେ ମୋ ଜୀବନର ସର୍ବୋତ୍ତମ ଉପହାର

ତୁମେ ଅଛବୋଲି ଅଧରରେ ହସ

ଚାଲୁଅଛି ମୋର ଶ୍ୱାସ

ବିନା ତୁମ ମୋର ଜୀବନ ଗୀତିକା

ଏକ ଅସ୍ୱାଭାବିକ ପରିପ୍ରକାଶ

# ନିରୁଦ୍ଦିଷ୍ଟ ଋତୁଟିଏ ପାଇଁ



ରୋଜି ମଲିକ୍

ଶୁଣିଛି ସେ ଆସେ, ଏମିତି ଏକ ସମୟରେ
ଚୁପ୍ ଚାପ ଅଗୋଚରରେ
ହେଲେ ଧରାପଡ଼ିଯାଏ...
ଫୁଲ ମାନଙ୍କ ରଙ୍ଗରେ
ଚହଟୁଥିବା ବଉଳରେ
ବାସ୍ନାୟିତ ପବନରେ ।
କେବେ ପୁଣି ଅଟକି ଯାଇଥାଏ;
କେଉଁ ପ୍ରିୟତମାର ଉଡ଼ିଯାଉଥିବା ପଣତରେ,
ଆଉ କାହାର ଆପେକ୍ଷମାଣ ସ୍ୱପ୍ନାସିକ୍ତ ଆଖିରେ ।
ହେଲେ ଏ ଯାଏଁ ତ ଦେଖା ନାହିଁ ତାର
କେବେଠୁଁ ଚାହିଁଛି ବାଟ,
ଖୋଜିଲିଣି କେତେ ଏ ସହର ସାରା...
କଙ୍କ୍ରିଟର କଙ୍କାଳ ମାନଙ୍କରେ
ଅଣନିଃଶ୍ୱାସୀ କରି ଦେଉଥିବା ଦୂଷିତ ପବନରେ
ରୁଦ୍ଧ କୋଠରୀର ନିୟନ୍ତ୍ରିତ ଶୀତଳତାରେ ।
ଚିହ୍ନବର୍ଣ୍ଣ ବି ନାହିଁ,
କୃତ୍ରିମ ଫୁଲ ମାନଙ୍କ ଡ଼ହ ଡ଼ହ ରଙ୍ଗରେ
(ସବୁଦିନ ପାଇଁ ତାକୁ ବାନ୍ଧିରଖିବାର
କେଡ଼େ ବିକଳ ପ୍ରଚେଷ୍ଟା ସତରେ! )
ଛାପଟିଏ ମଧ୍ୟ ଛାଡ଼ିନି,
ଅଜଣା ସ୍ୱପ୍ନ ପଛେ ଧାଉଁଥିବା
ବିବର୍ଣ୍ଣ ମୁହଁ ମାନଙ୍କରେ ।
ସତେ କଣ ବସନ୍ତ ନିରୁଦ୍ଦିଷ୍ଟ
ଏ ସହରରେ !.......

ତଥାପି ଖୋଜୁଛି...
କାଳେ ମିଳିଯିବ ଦେଖା ତାର,
ମୋ ସହରରେ ନ ହେଲେ ବି,
ଫୁଟୁଥିବା ଫୁଲ ହୋଇ ଶବ୍ଦରେ ଶବ୍ଦରେ,
କେଉଁ ଏକ କଳ୍ପନାବିଳାସୀ କବିର କବିତାରେ... ।

# ଯାଜ୍ଞସେନୀ



ଅସିତ କୁମାର ପଣ୍ଡା

"ସଖା"

ଯାଜ୍ଞସେନୀଙ୍କ ସଖା 'କୃଷ୍ଣ' .... ।୧ ।

ଅନ୍ତରର ସବୁ କୋହ ନିର୍ବିକାରେ ଯାହାଠି ଉଜାଡ଼ି ହୁଏ

ଦେଖେଇ ହୁଏ ଯାହାକୁ କଷଣର ପ୍ରତିଟି ସାକ୍ଷ୍ୟ ପ୍ରତିଛବି

ଯିଏ ବୁଝିପାରେ ନିରବତା ତଳେ ଲୁଚିଥିବା ଭାଷା ସବୁ

ନିର୍ବାଣର ପଥେ ଯେ ନେଇଯାଏ, ପାପସ୍ନାତା ହୋଇଲା ପରେ ବି

"ସଖୀ"

କୃଷ୍ଣଙ୍କ ସଖୀ କୃଷ୍ଣା .... ।୨ ।

ଯାହାର ଆଗମନେ ବ୍ୟଥିତ ହୃଦୟ ବି ପୁଲକିତ ହୁଏ

ସଞ୍ଚାରିତ ହୁଏ ମନେ ସୁପ୍ତ, ଲୁପ୍ତପ୍ରାୟ ଆଶା ଅସୁମାରୀ

କର୍ଣ୍ଣପାଇଁ ଅନୁରାଗ ଅନୁକମ୍ପା ଭରା ଥିଲେ ବି ମରମେ

ପାର୍ଥ ପ୍ରେମେ ନିର୍ଲିପ୍ତା ସେ, ଯେହ୍ନେ ଚିରସ୍ରୋତା ନିର୍ମଳ ନିର୍ଝରୀ

# ତୁମେ ଆସିବ ବୋଲି



ଆଶୁ ନାୟକ

ତୁମେ ଆସିବ ବୋଲି

କହିତ ନଥିଲ ଜମା

ତେଣୁ ମୁଁ ପ୍ରସ୍ତୁତ ନଥିଲି

ପିନ୍ଧିନଥିଲି ନୂଆ ଶାଢ଼ୀ

ଦେହରେ ନଥିଲା କିଛି ଗହଣା...

... ହେ ପ୍ରିୟତମ ତୁମେ ମୋର ଅତି ଆପଣାର,

ସଖା ତୁମେ ମୋ ଅବୁଝା ମନର,

ତୁମବିନା ଅସମ୍ପୂର୍ଣ୍ଣ ଏଇ ଜୀବନ ମୋର

ତୁମ କଥା ଭାବି ଭାବି ବଞ୍ଚିଯିବି ନିତି

ମୁଁ ତୁମର ଚିରନ୍ତନ ଆହ୍ଲାଦିନି ଶକ୍ତି...

# ମାଙ୍କଡ଼ ଓ କୁମ୍ଭୀର କଥା



## ପୁରାତନ ରଚନାରୁ (ସୌ: ସତ୍ୟଜୀତ ପଟ୍ଟନାୟକ)

ବହୁତ ଦିନ ତଳର କଥା, ନଇ କୂଳରେ ଗୋଟେ ବଡ ଜାମୁ ଗଛରେ ମାଙ୍କଡଟିଏ ଘର କରି ରହୁଥିଲା । ମାଙ୍କଡଟି ବହୁତ ସାହାସୀ, ବୁଦ୍ଧିମାନ, ଓ ଭଲ ପ୍ରକୃତିର ଥିଲା ଆଉ ସେ ଜାମୁ କୋଳି ଖାଇବାକୁ ଭାରି ଭଲ ପାଉଥିଲା । ସେଇ ନଈରେ ରହୁଥିଲେ ଗୋଟିଏ କୁମ୍ଭୀର ଦମ୍ପତି ।

ଦିନକର କଥା । କୁମ୍ଭୀରଟି ସେଇ ନଈର ପାଣି ଭିତରୁ ବାହାରି କୁଳରେ ଆସି ପହଞ୍ଚିଲା ଓ ଦେଖିଲା ମାଙ୍କଡଟିଏ ଭାରି ଖୁସିରେ ଏ ଡାଳରୁ ସେ ଡାଳ ଡେଇଁ ବୁଲୁଛି । କୁମ୍ଭୀରଟି ମାଙ୍କଡକୁ ଖୁସିର କାରଣ ପଚାରିଲା । ମାଙ୍କଡ କହିଲା 'ଏଇ ଜାମୁ ଗଛର କୋଳି ଭାରି ମିଠା, ଆଉ ସିଏ ସେ କୋଳି ଖାଇ ଖୁସିରେ ଅଛି ।' ଏହା ଶୁଣି କୁମ୍ଭୀର ମଧ୍ୟ ସେ କୋଳି ଖାଇବାକୁ ଇଛା କଲା ଓ ମାଙ୍କଡ ସଙ୍ଗେ ସଙ୍ଗେ କିଛି କୋଳି କୁମ୍ଭୀରକୁ ଦେଇ ତା ସହିତ ମିତ୍ରତା ସ୍ଥାପନ କଲା । ଏମିତି କିଛି ଦିନ ବିତିଗଲା । ଦିନେ ମାଙ୍କଡଟି କିଛି କୋଳି ଆଣି କୁମ୍ଭୀରକୁ ଦେଲା ତା ସ୍ତ୍ରୀ ପାଇଁ ନେଇ ଯିବା ପାଇଁ । କୁମ୍ଭୀର ଅତି ଖୁସିରେ କୋଳିତକ ନେଇ ତା ସ୍ତ୍ରୀକୁ ଦେଲା । କୁମ୍ଭୀରର ସ୍ତ୍ରୀ କୋଳି ଖାଇ ପଚାରିଲା ଏହା ସେ କେଉଁଠୁ ପାଇଲା-କୁମ୍ଭୀର ତାହା ମାଙ୍କଡ ଦେଇଥିବା ଓ ସେମାନଙ୍କ ମିତ୍ରତା କଥା ତା ସ୍ତ୍ରୀକୁ କହିଲା । କୁମ୍ଭୀରର ସ୍ତ୍ରୀ ବଡ ଖଳ ପ୍ରକୃତିର ଓ ଲୋଭୀ ଥିଲା । ସେ ମନେ ମନେ ବିଚାର କଲା କି ମାଙ୍କଡ ଦେଇଥିବା କୋଳି ଜଦି ଏତେ ସ୍ୱାଦୁ ତାହେଲେ ମାଙ୍କଡର କଲିଜାଟା ମଧ୍ୟ ଆହୁରି ସ୍ୱାଦୁ ହେଇଥିବ । ସେ ତାର ମନ କଥା ସ୍ୱାମୀକୁ କହିଲା 'ତୁମେ ତୁମ ମିତ୍ରକୁ ଆମ ଘରକୁ ଖାଇବା ପାଇଁ ନିମନ୍ତ୍ରଣ କଲେ ମୁଁ ତାର କଲିଜା ଖାଇ ପାରନ୍ତି' । ଏହା ଶୁଣି କୁମ୍ଭୀରଟି ଅତି ଆଘାତ ପାଇଲା ହେଲେ ତାର ସ୍ତ୍ରୀକୁ ସେ କୌଣସି ମତେ ବୁଝାଇ ପାରିଲା ନାହିଁ ଓ ମାଙ୍କଡକୁ ଯାଇ ସ୍ତ୍ରୀର ନିମନ୍ତ୍ରଣ ଜଣାଇଲା । ମାଙ୍କଡକୁ ପହଁରା ଜଣା ନଥିଲା । ମାଙ୍କଡ କହିଲା ବନ୍ଧୁ, ମୁ ଯିବି କେମିତି? ମୋତେ ତ ପହଁରା ଜଣା ନାହିଁ । କୁମ୍ଭୀର କହିଲା ମୁ ତୁମକୁ ମୋ ପିଠିରେ ବସାଇ ନେଇ ଯିବି । ସେଥିରେ ସେ କୁମ୍ଭୀର ପିଠିରେ ବସି ଆସିବାକୁ ରାଜି ହୋଇଗଲା । କିଛିବାଟ ଯିବା ପରେ କୁମ୍ଭୀର ତାର ମିତ୍ରକୁ ସ୍ତ୍ରୀ ନିମନ୍ତ୍ରଣ କରିବାର ଉଦ୍ଦେଶ୍ୟ ଜଣାଇଲା । ଏକଥା ଶୁଣି ମାଙ୍କଡଟି ଅତି ଦୁଃଖୀ ଓ ଭୟଭୀତ ହେଲା ସତ ହେଲେ ପର ମୁହୂର୍ତ୍ତରେ ସେ କୁମ୍ଭୀରକୁ କହିଲା 'ବନ୍ଧୁ ତୁମେ ଏକଥା ମୋତେ ଆଗରୁ କାହିଁକି କହିଲ ନାହିଁ ! ମୁଁ ତ ମୋ କଲିଜା ଗଛରେ ଛାଡି ଆସିଛି, ତୁମେ ମୋତେ ସେ ଗଛ ପାଖକୁ ନେଇ ଚାଲ, ମୁଁ ଯାଇ ମୋ କଲିଜା ନେଇ ଆସିବି ।' କୁମ୍ଭୀର ଏହା ଶୁଣି ମାଙ୍କଡକୁ ସେ ଗଛ ପାଖକୁ ନେଇଗଲା । ନଇ କୂଳରେ ପହଞ୍ଚିବା କ୍ଷଣି ମାଙ୍କଡ ଡିଆଁ ମାରି ଗଛକୁ ଚଢିଗଲା ଆଉ କୁମ୍ଭୀରକୁ କହିଲା 'ତୁମେ ଏଡେ ବୋକା ବୋଲି ମୁଁ ଜାଣି ନଥିଲି, କଲିଜା ଶରୀର ଭିତରେ ହିଁ ଥାଏ, କେହି କାହା କଲିଜାକୁ ଶରୀର ଠାରୁ ଅଲଗା କରି ରଖେନି । ତୁମେ ମୋ ମିତ୍ର ହୋଇ ମଧ୍ୟ ମୋତେ ମାରିବାକୁ କିପରି ଚାହୁଁଥିଲ ! ଆଜିଠୁ ତୁମେ ଆଉ ମୋର ମିତ୍ର ନୁହେଁ । ତୁମେ ଏଠାରୁ ଫେରିଯାଅ ।'

ଏହି ପତ୍ରିକାରେ ପ୍ରକାଶିତ ସମସ୍ତ ଲେଖାର ଲେଖକ ଲେଖିକା ମାନେ ପ୍ରତିଷ୍ଠିତ ଲେଖକ ଲେଖିକା ଗୋଷ୍ଠୀ ଅନ୍ତର୍ଭୂକ୍ତ ନ ହୋଇ ପାରନ୍ତି, ତେଣୁ ସେମାନଙ୍କ ଲେଖାରେ ବ୍ୟାକରଣ ଗତ ଭୂଲ ଭଟକା ଥାଇପାରେ, ସେ ସବୁକୁ ଅଣଦେଖା କରି ପତ୍ରିକାକୁ ପଢ଼ିବା ପାଇଁ ଆମ ଅନୁରୋଧ...

ପତ୍ରିକାର ସମ୍ପାଦକ / ପ୍ରକାଶକ ପେଷାରେ ଓଡ଼ିଆ ସାହିତ୍ୟ ସହିତ ସଂଶ୍ଳିଷ୍ଟ ନୁହନ୍ତି, ତେଣୁ ସଂପୂର୍ଣ୍ଣ ନିର୍ଭୂଲ ଓଡ଼ିଆ ପରିବେଷଣ କରିବାର ପ୍ରଚେଷ୍ଟା ମାତ୍ର କରୁଛି, ଧନ୍ୟବାଦ




ଚଳିତ ମାସର ସଂସ୍କରଣକୁ ଡ଼ାଉନଲୋଡ୍ କରି ପଢ଼ିଥିବା ହେତୁ ଆପଣଙ୍କୁ ଧନ୍ୟବାଦ ।

ଏହି ଇ-ପତ୍ରିକା ବିଷୟରେ ଆପଣଙ୍କ ମତାମତ ଆପଣ ଆମ ଇ-ମେଲ୍ ଠିକଣା aahwaan@gmail.com ରେ ଦେଇ ପାରିବେ କିମ୍ବା ଫେସ୍‌ବୁକରେ ଥିବା ଆମ ଗ୍ରୁପରେ ଦେଇ ପାରିବେ ।

ଯେଉଁ ବନ୍ଧୁମାନଙ୍କର ଲେଖା ଚଳିତ ସଂସ୍କରଣରେ ସ୍ଥାନ ପାଇନାହିଁ ସେମାନେ ଦୟାକରି ନିରୁତ୍ସାହିତ ହୁଅନ୍ତୁ ନାହିଁ । ଆଗାମୀ ସଂସ୍କରଣରେ ଏହା ନିଶ୍ଚୟ ପ୍ରକାଶ ପାଇବାର ବ୍ୟବସ୍ଥା କରାଯିବ । ବନ୍ଧୁମାନଙ୍କୁ ନିବେଦନ କରୁଛି ଯେ ସେମାନେ ନିଜର ପ୍ରକାଶନ ଯୋଗ୍ୟ ଲେଖାକୁ ମୋର ଇ-ମେଲ୍ ଠିକଣା aahwaan@gmail.com ରେ ପଠାନ୍ତୁ, ଯାହା ଦ୍ୱାରା ଲେଖା ସବୁ ପ୍ରକାଶନ ହେବା ପାଇଁ ସହଜରେ ବଛାଯାଇ ପାରିବ ।